ଡାକ୍ତର ରାଧାଚରଣ ପଣ୍ଡା ଏଲ୍. ଏମ୍. ପି., ଡାକ୍ତର ଗୋବନ୍ଦଚନ୍ଦ୍ର ମହାନ୍ତି ଏଲ୍. ଏମ୍. ପି. ଓ ଶ୍ରୀଯୁକ୍ତ ଦାଶରଥି ପଟ୍ଟନାୟକ ଜମିଦାର, ଓଳସିଂହ, ସ୍ୱତଃପ୍ରବୃତ୍ତ ହୋଇ ଉକ୍ତ ପୁସ୍ତକର ଅର୍ଦ୍ଧାଧିକ ମୁଦ୍ରଣ ଭାର ବହନ କରି ଉତ୍କଳ ସାହିତ୍ୟର ପ୍ରଚାର ଓ ପ୍ରସାର ନିମିତ୍ତ ଯଥେଷ୍ଟ ସାହାଯ୍ୟ କରିଥିବାରୁ ସେମାନଙ୍କଠାରେ ମୁଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛି । ଇତି ।

| | | |
|---|---|---|
| ପିପିଲି | } | ବିନୀତ |
| ତା ୧୨ । ୧ । ୩୪ | | ଲେଖକ |

# ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକାବଳୀ

## କନ୍ୟାସୁନା (ସାମାଜିକ ଉପନ୍ୟାସ)

ଶିକ୍ଷିତ ଯୁବକ ମଧୁସୂଦନଙ୍କର ସରଳପ୍ରାଣା କିଶୋରୀ-ପ୍ରଣୟିନୀ ପ୍ରତି ଅସହନୀୟ ଅବମାନନା ଓ ଅମାନୁଷିକ ଅତ୍ୟାଚାର କାହାଣୀ ଶୁଣି କ୍ରୋଧରେ ଦେହ ଥାଙ୍କୁର ଉଠିବ । କୋମଳହୃଦୟା କୋକିଳ ସ୍ୱାମୀ, ଶାଶୁ ଓ ନଣନ୍ଦଙ୍କର ନିର୍ମମ ଗଞ୍ଜଣା ସହିବାରେ ହୃଦୟକୁ ଯେପରି କଠୋର କରିପାରିଛି ଓ ଦେବର ଯଦୁନାଥର ପୈଶାଚିକ ପ୍ରସ୍ତାବରେ ସମ୍ମତ ନ ହେବାରୁ ସେହି ଯଦୁନାଥ ଚକ୍ରାନ୍ତରେ ତାକୁ ଗୃହରୁ ବିତାଡ଼ିତ କରାଇ ଯେଉଁ ଯାତନା ଭୋଗାଇଛି, ପାଠକର ମସ୍ତକ ସ୍ୱତଃ ସେହି ନିରୀହ ବାଳିକାର ପଦ ତଳେ ନଇଁ ପଡ଼ିବ । ପ୍ରତ୍ୟେକ ଶିକ୍ଷିତ ଯୁବକ ଯୁବତୀଙ୍କ ହାତରେ ଖଣ୍ଡିଏ ଲେଖାଏଁ ଏ ପୁସ୍ତକ ରହିବା ନିତାନ୍ତ ଆବଶ୍ୟକ । ସୁଲଭ ମୂଲ୍ୟ—ଦଶ ଅଣା ।

## ପ୍ରଣୟ (ଖଣ୍ଡକାବ୍ୟ)

ପ୍ରକୃତ ପ୍ରଣୟର ପ୍ରାଣମୟ ଚିତ୍ର । ଭାବ, ଭାଷା, ଛନ୍ଦ—ସରଳ, ସୁନ୍ଦର ଓ ସୁଲଳିତ । ପାଠ କରିବାକୁ ଆରମ୍ଭ କଲେ ଏକ ନିଶ୍ୱାସରେ ଶେଷ ନ କରି ରହି ହେବ ନାହିଁ । ଉତ୍କଳର ସାହିତ୍ୟିକମାନେ ଚମତ୍କାର ମନ୍ତବ୍ୟ ଦେଇଛନ୍ତି । ନିତାନ୍ତ ଶସ୍ତା ମୂଲ୍ୟ—ତିନି ଅଣା ।

## ବେହୁଲା (ଶିଶୁ-ସାହିତ୍ୟ)

ସତୀତ୍ୱର ଜୀବନ୍ତ ଉଦାହରଣ । ନାରୀ ଚରିତ୍ର ସରଳ, ସୁନ୍ଦର ଓ ମହତ୍ କରି ଗଢ଼ିବାପାଇଁ ନିଜ ନିଜର ଝିଅ ଭଉଣୀମାନଙ୍କ ହାତରେ ଖଣ୍ଡିଏ ଖଣ୍ଡିଏ ବେହୁଲା ପୁସ୍ତକ ଦେଇ ନିଶ୍ଚିନ୍ତ ହୋଇ-ପାରିବେ । ମୂଲ୍ୟ—ଚାରି ଅଣା ।



# ପୁରସ୍କାର

## —ପ୍ରଥମ ପରିଚ୍ଛେଦ—

ଦିନ ବାରଟାରୁ ବଳିଲଣି । ଜଗନ୍ନାଥ ମଙ୍ଗରାଜ ତାଙ୍କର ମେଲାଘରେ ମହାଜନୀ କାଗଜପତ୍ର ଧେଇ ବସିଛନ୍ତି । ନିକଟରେ ସତର ଅଠର ବର୍ଷର ଗୋଟିଏ ଯୁବକ ବସିଛି । ମଙ୍ଗରାଜ ହିସାବ-ପତ୍ରରେ ଏତେ ବ୍ୟସ୍ତ ଯେ, ଦୁଇ ଘଣ୍ଟାକାଳ ଅତୀତ ହୋଇଗଲଣି, ସେ ଯୁବକ ଆଡ଼କୁ ଥରେ ସୁଦ୍ଧା ଦୃଷ୍ଟି ଫେରାଇବାକୁ ଅବସର ପାଇ ନାହାନ୍ତି । ସୁଧ ହିସାବରେ କଡ଼ାକାନ୍ତି ଯେପରି ଭୁଲ୍ ନ ହୁଏ, ସେଥିପାଇଁ ଆଖି ଉପରେ ଆଉ ଯୋଡ଼ାଏ ଆଖି ଲଗାଇ ତତ୍ପର ହୋଇଛନ୍ତି ।

"ହରି ! ହରି !" କହି ଉମା ଆସି ଦାଣ୍ଡଦ୍ୱାରେ ଠିଆ ହୋଇଗଲା । ମଙ୍ଗରାଜେ କାଗଜରୁ ଆଖି ଫେରାଇଲେ । ଉମାକୁ ଚାହିଁ କହିଲେ, "କିରେ ! କଣ ହେଲା ?" ଉମା ତାର ଶତଛିନ୍ନ ତେଲଚିକିଟା-ବୋଲା ଗାମୁଛାରେ କପାଳରୁ ଝାଳ ପୋଛୁ ପୋଛୁ କହିଲା, "ଦାମ ସାହୁକୁ ସାଙ୍ଗେ ସାଙ୍ଗେ ନେଇ ଆସିଛି । ନିଧି ଶତପଥୀ କହିଲା 'ଆଜି ଟିକିଏ ପରେ ଆସିବି' ।" ମଙ୍ଗରାଜେ ଆଉ କିଛି ନ କହି ପୂର୍ବବତ ହିସାବରେ ମନୋଯୋଗ ଦେଲେ । ଉମା ପିଣ୍ଡା ଉପରେ ବସି ଗାମୁଛା ହଲାଇ ପବନ ଖାଇବାକୁ ଲାଗିଲା ।

"ଜୁହାର ଆଜ୍ଞା !"

ମଙ୍ଗରାଜେ କିଛି କହିଲେ ନାହିଁ—ଜୁହାର ଗ୍ରହଣସୂଚକ ମସ୍ତକ ସଞ୍ଚାଳନ ସୁଦ୍ଧା କଲେ ନାହିଁ । ଦାମ ସାହୁ ନୀରବରେ ଠିଆ ହୋଇ ରହିଲା । ପ୍ରାୟ ପାଞ୍ଚ ମିନଟ୍ ପରେ ମଙ୍ଗରାଜେ କାଗଜପତ୍ର ସବୁ ଗୋଟିଏ ପାଖକୁ ଅଡେଇଦେଇ ସମ୍ମୁଖ ସ୍ଥାନଟା ପରିଷ୍କାର କରିଦେଲେ । ଦାମ ସାହୁକୁ ଉଦ୍ଦେଶ୍ୟ କରି କହିଲେ, "ଆଣ ସବୁ ଟଙ୍କା, ଆଣିଛୁ ନା ଆଜି କିଛି ରହିବ ?" ଦାମ ସାହୁ ବାଁ ହାତରେ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ କହିଲା, "ନାଇଁ ଆଜ୍ଞା ! କିଛି ଆଣି ନାହିଁ । ଖାଲି ଆପଣଙ୍କର···"ମଙ୍ଗରାଜେ ବାଧା ଦେଇ ଉତ୍ତେଜିତ ଭାବରେ କହିଲେ, "ଚୁପ କର ବଦମାସ ! କହିଲା ନାଇଁ ଆଜ୍ଞା, କିଛି ଆଣି ନାହିଁ— କାହିଁକି ? ଏତେ ଗେଲବସର କାହିଁକି ? ଯେତେବେଳେ ଦାନ୍ତରେ କୁଟା ହୋଇ ଧନରାତ ପଡ଼ ପଡ଼ ନେଇ ଯାଉଥିଲୁ, ସେ କଥା କଣ ଭୁଲିଗଲୁ ? ମଦଘଡା ନା କାମ ସରିଲେ ଗଡଗଡା । ତୋର କାମ ହୋଇଗଲା, ଏବେ ଆମ କାମ ହେଲେ କେତେ ନ ହେଲେ କେତେ ? କିଛି ଆଣି ନାହୁଁ ତ କଣ ମୁହଁ ଦେଖାଇବାକୁ ଆସିଲୁ ? ସେ ସବୁ ରଖିଦେ, ମୋର ଜରୁରୀ ଦରକାର, ଆଜି ସନ୍ଧ୍ୟାରେ କଟକ ଯିବି । ସନ୍ଧ୍ୟା ପୂର୍ବରୁ ଟଙ୍କାତକ ଆଣି ଯେମିତି ହେଲେ ଦାଖଲ କର । ନ ହେଲେ ମୁଁ ସତ କହୁଛି କାହାର ମୁହଁ ମହତକୁ ଚାହିଁ ବି ନାହିଁ ।"

"ଆଜ୍ଞା ! ମୁଁ କଣ କରିବି ? ଆଜିକି ତିନି ଦିନ ହେଲା ମୁଁ ଯେ କି କଷ୍ଟ ପାଇଲିଣି, ତା ମୋ ମନ ଜାଣେ । ଦେଖିଲା ମୁହଁକୁ ମାଗୁଛି, ପଦେ ମିଛ କହୁ ନାହିଁ ।—ବଂସା ଖଣ୍ଡେ ଧରି ଗାଁ ଯାକ ବୁଲି ଆସିଲି ଯେ କେହି ପଇସା ଗୁରିଅଣା ହେଲେ ଦେଲେ ନାହିଁ ।

ସେତକ ହୋଇଥିଲେ ପିଲାଙ୍କର ଓଳିଏ ଦାନା ଚଳି ଯାଇଥାନ୍ତା । କାଳ ତ ଯେମିତି ଦେଖୁଚ ଆପଣ । ଗ୍ରେଡ଼ ବଦଳରେ ସାନ ହୁଅଛି ତା ମାଲୁ ........।"

ମଙ୍ଗରାଜେ କ୍ରୋଧରେ ଅଧୀର ହୋଇ ଉଠିଲେ । ନିତାନ୍ତ ଅସନ୍ତୁଷ୍ଟ ଭାବରେ କହିଲେ, "ହଇରେ ପାଜି ! ତୋ ଘରର ଜମା-ଖର୍ଚ୍ଚ ବୁଝି ମୋର କଣ ଲାଭ କହିଲୁ ? ତୋର ପିଲେ ମଲେ କି ବଞ୍ଚିଲେ ମୋର କଣ ଅଛି ? ତୁ ସୁଖରେ ରହି ବେଶ୍ ଘିଅ ଭାତ ଖାଇଲେ ପରଗଣ କାଗଜରେ ମୋତେ କଣ ପାଉଣ ଦେଇଯିବୁ ? ତୁ ବଦମାସ ଯଦି ନ ଅଣିଛୁ ଆସିଲୁ କାହିଁକି ? ମୁଖପଦ୍ମ ଦେଖାଇ-ବାକୁ ନା ଟିକ୍କଣ 'ଜୁହାର ଆଜ୍ଞା'ଟି ଶୁଣାଇବାକୁ ? 'ଜୁହାର ଆଜ୍ଞା' ଶବ୍ଦଟି କାନକୁ ବେଶ୍ ଶୁଭୁଛି ; କିନ୍ତୁ ମନଭିତରେ ଯାହା ଅଛି, ତାହା ଜଗନ୍ନାଥ ମଙ୍ଗରାଜଙ୍କୁ ଅମାଲୁମ୍ ନାହିଁ ରେ ବାପା ।"

"ରାମ, ରାମ ! ଆପଣ ତ ଏପରି କହୁଚ, ଆଉ କିଏ କଣ ନ କହିବ ? ଜୁହାର.........।" "ହଁ ରେ, ମୁଁ ସବୁ ଜାଣେ । ଅଚ୍ଛା, ସତ କହିଲୁ, ତମେସବୁ ଯେ ଜୁହାର କର, ସେ ଜୁହାର କଣ ମୋତେ କର ?"

"ଅଜ୍ଞା, କି କଥା କହୁଚନ୍ତି !"

"ତୁ ଯଦି ମହାପ୍ରସାଦ କୁଡୁଆ ଧରି କହୁ, 'ମୁଁ ତମକୁ ଜୁହାର କରେ, ତେବେ ବି ମୁଁ ବିଶ୍ୱାସ କରିବି ନାହିଁ । ମୁଁ ତ ଆଉ ଦୁଧ-ଖିଆ ପିଲାଟିଏ ନୁହେ ଯେ ଭୁଲିଯିବି ? ତମେ ସବୁ ଜୁହାର କର ମୋର ଏହି ଟଙ୍କା ସିନ୍ଦୁକକୁ, ଆଉ ଏ ସିରସ୍ତାର କାଗଜପତ୍ରକୁ—ମୋତେ କେବେ ହେଲେ ଜୁହାର କର ନାହିଁ । ଏ କଥା ଧ୍ରୁବ ସତ୍ୟ । ପାଖରେ ଥିବାଯାଏ 'ଅଜ୍ଞା' 'ଅପଣ' । ଟିକିଏ ଦୂର ହୋଇ-

ଗଲେ ମୋର ସପ୍ତପୁରୁଷ ନାଁ ଧରି ଶୋଧୁଥିବ । ଆଜି ତମର ମାଇପେ-ସବୁ ବୃନ୍ଦାବତୀଙ୍କ ପାଖରେ ସନ୍ଧ୍ୟାବତୀ ଦେଉଥିବେ କିପରି ମୁଁ ଚଞ୍ଚଳ ମରିବି ।”

“ରାମ, ରାମ ! ଆପଣ……”

“ସେପରି ଖୋସାମତିଆ କଥା ବହୁତ ଶୁଣିଛୁ । ଶୁଣି ଶୁଣି ମୁଣ୍ଡର ବାଳ ଧଳା ହେଲାଣି । ଆଉ ଶୁଣିବା ଦରକାର ନାହିଁ । ଅସଲ କଥାଟି କହ—ଟଙ୍କାତକ ଭଲରେ ଭଲରେ ଦେଇଦେବୁ ନା ନାଲିସ-ଯାଏ ଯିବ ?”

“ଆଜ୍ଞା ! ଆଉ ପାଞ୍ଚଟି ଦିନ ସତାର କରନ୍ତୁ ।”

“ବେଶ୍, ଯା । ଆଜି ସନ୍ଧ୍ୟାରେ ତ କଟକ ଯାଉଛୁ । ଯାହାହେଉ ଗୋଟାଏ କିନାରା କରି ଆସିବ । ଦେଖିବ, ତୁ ତେଲ୍ ଟୋକା କରଣ ପୁଅ ସାଙ୍ଗରେ କେତେ ଖେଳିବୁ ।”

ଦାମ ସାହୁ କିଛି କହିବ ବୋଲି ଉଦ୍ୟତ ହେଲାକ୍ଷଣି ମଙ୍ଗରାଜେ ଉମାକୁ ଲକ୍ଷ୍ୟ କରି କହିଲେ, “ଆରେ, ମୋର କାଗଜପତ୍ରରେ ଗୋଳମାଳ ହେଲା । ଯାକୁ ଚଞ୍ଚଳ ଏଠାରୁ ବାହାର କରି ଦେ ତ !” ଉମା ଉଠି ଠିଆ ହେଲା । ଦାମ ସାହୁ ଦେଖିଲା, ପାଟି ଖୋଲିଲେ ବିପଦ । ସେ ନୀରବରେ ସେ ସ୍ଥାନ ତ୍ୟାଗ କଲା । ଦୁଇଦିନ ଉପବାସ ହେତୁ ଉମାର ‘ଅସମାନ କୋଦ୍’ ଖାଇବାକୁ ସାହସ କରି ପାରିଲା ନାହିଁ ।

କ୍ଷଣପରେ ନିଧି ଶତପଥୀ ଆସି ପହଞ୍ଚିଲେ । ସେ ଦୁଆରେ ଗୋଡ଼ ଦେଲାକ୍ଷଣି ମଙ୍ଗରାଜେ କହିଲେ, “ଆଜି କଟକ ଯାଉଛୁ ଶତପଥୀଏ । ନାଲିସ ଦାଏର କରି ଆସିବା—ସେ କଣ ଭଲ ହେବ ?

ଅଜିକି ଛ ମାସ ହେଲା କହୁଛି ଶୁଣୁ ନାହିଁ—ତମ ଇଚ୍ଛା ଏଣିକି ! ଅଜ ମୁହୂର୍ତ୍ତେ ମୁଁ ସମ୍ଭାଳି ପାରିବ ନାହିଁ ।"

ନିଧି ଶତପଥୀ କାନ୍ଦ କାନ୍ଦ ହୋଇ କହିଲେ, "କଣ କହିବି ଆଜ୍ଞା ! କରମ କଥା ସେ । ଝିଅଟିକୁ ଏଗାର ବର୍ଷ ପୂରି ଗଲାଣି । ବ୍ରାହ୍ମଣ ସଂସାର—ଅଜ ତ ରଖିହେବ ନାହିଁ । ସେଥିପାଇଁ ଆଗ ପଛ ନ ବିଚାରି ଜମି ଦୁଇ ମାଣ ଛଡ଼ାଇଦେଲି । କିନ୍ତୁ କଣ ହେବ ? କାଲି ଘଟଣା ତ ଶୁଣିଥିବେ । କେଉଁଠୁ ସେ ଶୂନ୍ୟ ନିଅଁ ଅସିଲା, କୁଣ୍ଠା-ଖିଏ ସୁଦ୍ଧା ରଖିଲା ନାହିଁ । କଣ କରିବି, ମୋତେ କିଛି ବୁଦ୍ଧି ବାଟ ଦିଶୁ ନାହିଁ । ଝିଅଟିକୁ କପର ଜଟାଇଦେଲେ ରକ୍ଷା ପାଇଯାଆନ୍ତି ।" ମଙ୍ଗରାଜେ ଦୁଇ ମିନିଟ ଧରି ନିଧି ଶତପଥୀର ମୁହଁକୁ ଚାହିଁଲେ । ତାପରେ କହିଲେ, "ହଉ, ତମେ ଯାଅ, ପରେ କଥାବାର୍ତ୍ତା ହେବ ।"

ଶତପଥୀ ଚାଲିଗଲେ । ମଙ୍ଗରାଜ ଆପଣା ମନକୁ କହିବାକୁ ଲାଗିଲେ, "କୁଣ୍ଠା ଖିଏ ରଖିଲା ନାହିଁ—କପର ବହନ୍ତା ? ଅନ୍ଧ ବୋଲି ଚନ୍ଦ୍ର, ସୂର୍ଯ୍ୟ କଣ ଆଖି ବୁଜିଛନ୍ତି ? ଉପରେ ତ ଜଣେ ଅଛି ନ୍ୟାୟ ଅନ୍ୟାୟ ବିଚାର କରିବାକୁ । ଯେ ଯେମିତି କର୍ମ କରିବ, ସେ ସେମିତି ଫଳ ପାଇବ । ଝିଅ ବାହା କରିବୁ ବୋଲି ଜମି ଦୁଇମାଣ ଛଡ଼ାଇଦେଲୁ । ବେଶ୍ କଲୁ—ମୋତେ ଦେଲୁ ନାହିଁ ? ମୁଁ ମହାଜନ, ମୋର ଟଙ୍କା ଥାଉ । ମୋତେ ଲୁଚାଇ ଅନ୍ୟକୁ ଜମି ବିକୁଛୁ । କାହିଁକି ? ମୁଁ କଣ ଟଙ୍କା ଦିଅନ୍ତି ନାହିଁ ? ନା, ଶାସ୍ତ୍ରରେ ଅଛି ପର କଳାମୂର୍ତ୍ତି ଅଙ୍କ ବିଶ୍ୱାସ ନାହିଁ ।" ତା ପରେ ଟିକିଏ ଭାବି ନେଇ ଡାକିଲେ, "ଭଗା !" ଭଗା 'ଆଜ୍ଞା' କହି ଘରକୁ ଅସିଲା । ମଙ୍ଗରାଜେ ପଚାରିଲେ, "ହଇରେ, ନିଧି ଶତପଥୀର ସମୁଦାୟ ଜମି କେତେ ?" "ଜମା ତ ଚାରିମାଣ, ସେଥିରୁ ଦୁଇମାଣ ହାଲି ଆଠ ଦିନ ହେବ ସଦେଇ ସାନ୍ତସିକୁ ବିକିଛି !

ଅଜ୍ ଦୁଇ ମାଣ ଥିବ ।" "ସେ ଦୁଇମାଣକ ବି ବିକ୍ରିବ ଦେଖାଗଲ୍ଣି । ଟିଅକୁ ସେ ଏ ବର୍ଷ ରଖିବ ନାହିଁ, ଯେମିତି ହେଉ ବାହା ଦେବ । ତେବେ ଅସଲ ହେଉଛି ଟଙ୍କା । ଟଙ୍କା ଦେଲବାଲ ଆଉ କିଏ ଅଛି କି? ବଡ ଜୋର ଅସି ଅସି ମୋର ପର୍ଯ୍ୟନ୍ତ, ମୁଁ ତ ଅଉ ଛଦାମଟିଏ ଦେବ ନାହିଁ । ସେ ବାଧ୍ୟ ହୋଇ ଜମି ବିକିବ । ସେ ଦୁଇମାଣ ଯେତେବେଳେ ମୋତେ ନ ଦେଇଛି, ଏ ଦୁଇମାଣ କିଣ ଦେବ ! ଜଣାଯାଉଛି ମୋତେ ଲୁଚାଇ ବୋଧହୁଏ ସଦେଇ ସାମନ୍ତରିଙ୍କୁ ବିକିବ । କିନ୍ତୁ ସେତକ ଜମି ହାତରୁ ଗଲେ ଅଉ ଯେ ଅଦାୟ ହେବାର କିଛି ଉପାୟ ନାହିଁ । କଣ କରିବା ? କାଲି ତା ନାମରେ ନାଲିସ ଦାଏର କରିବାକୁ ହେବ । ତା ଛଡ଼ା ଅଉ ଉପାୟ କଣ ?"

ଦାଣ୍ଡରେ ଯାଉ ଯାଉ ସଦାନନ୍ଦ ସାମନ୍ତରାୟ ଓରଫେ ସଦେଇ ସାନ୍ତରା ଡାକିଲେ, "ବସିଚ ମଙ୍ଗରାଜ ବାବୁ !" ସାନ୍ତରାଙ୍କର ସେ କଥା ଦୁଇପଦ ମଙ୍ଗରାଜଙ୍କର ଦେହରେ ବଜ୍ରପରି ଭେଦିଗଲା । ସେ ପେଣ୍ଡ-ସାପ ପରି ଭିତରେ ଭିତରେ ଫଁ ଫଁ ହେବାକୁ ଲଗିଲେ; କିନ୍ତୁ ବାହାରକୁ ଭଦ୍ରତା ଦେଖାଇ କହିଲେ, "କିଏ ସାମନ୍ତରାୟେ, ଆସ ହେ ଏଣେ । ଏତେବେଳେ କୁଆଡେ ବାଟେ ହୋଇଥିଲ ?" ସଦାନନ୍ଦ ହସି ହସି ଘରଭିତରକୁ ପଶି ଆସିଲେ । କହିଲେ, "ଅଗାଧିଆ ପରା ? ଧନ ଯେ ଗୋଟାଏ ହେବ ।" ମଙ୍ଗରାଜେ ଉତ୍ତର ଦେବାକୁ ଉଦ୍ୟତ ହେଉଛନ୍ତି, ସାମନ୍ତରା ଯୁବକ ଅଡକୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, "ଏଇଟି କିଏ ?"

ମଙ୍ଗରାଜ ଯୁବକ ଆଡ଼କୁ ଟିକିଏ ଗୃହିଁ ଦେଇ କହିଲେ— "ଏଇଟି କିଏ ? ବୁଝି ପାରୁ ନାହିଁ ସେଇଟି କିଏ ? ବ୍ରାହ୍ମଣ ଝୁଅଟି ବ୍ରତ ହୋଇ ପାରୁ ନ ଥିବ । ଭିକ୍ଷା ପାଇଁ ତ ଆଜିକାଲି କମ୍ ଲୋକ ବୁଲୁ

ନାହାନ୍ତି । କାଲି ପରା·······।" ସଦାନନ୍ଦ ବାଧା ଦେଇ କହିଲା, "କଣ ତମେ କହି ଯାଉଛ ? ନ ବୁଝି ନ ଶୁଝି ବ୍ରାହ୍ମଣ ପିଲା । ଅଧଭିଏ ମଣ ବଢ଼ିଛି । ବ୍ରାହ୍ମଣ ପିଲା ହୋଇଥିଲେ ଏତେ ଧନ ଯାଏ ବ୍ରତ ନ ହୋଇ ଥାଆନ୍ତା ?" ମଙ୍ଗରାଜେ ଆଉ ଥରେ ଯୁବକଙ୍କୁ ଗୃହିଁଲେ । "ହଁ ହେ, ବ୍ରାହ୍ମଣ ପିଲା ନ ହେଲେ ସ୍କୁଲ ପିଲା ତ । ଗୁନ୍ଧା କରିବାକୁ ଅସିଥିବ । ଓଃ, ତାହା ଭେଦାରେ ମଣିଷ ଜଳି ପୋଡ଼ି ମରିଗଲା ! ସତେ ଯେପରି ପାଠ ପଢ଼ି ଦେଶଟାକୁ ଅକାଶକୁ ଟେକିଦେବେ ! କିରେ ବାପା, ତୁମର ଯଦ ପଢ଼ିବାର କଥା, ନିଜ ପଇସାରେ ପଢ଼ । ପର-ପାଟିରେ ପିଠା ଖାଇବାକୁ କିଭ ଲହ ଲହ କାହିଁକି ? ପାଠ ପଢ଼ି ଚାକିରି କଲେ ସ୍ୱେଳଗାରରୁ ଭାଗ ଦେବେ ପରା ! କମେ ତ ଦେଶରେ ଅନ୍ୟାୟ ଘୋଟିଗଲା । କେଉଁ କଥାରେ ହେଲେ ବାଛବଚାର ଅଛି ? ଅଗେ ଥିଲା କରଣ ପିଲାଏ ପାଠ ପଢ଼ୁଥିଲେ—ଚାକିରି ବାକିରି ତାଙ୍କର ଥିଲା । ଅଜିକାଲି ତ ହାଡ଼ିବାଉରି ପାଠ ପଢ଼ିଲେ । ପାଠର ମର୍ଯ୍ୟାଦା ବି ଗଲାଣି । ଦେଖୁ ନାହିଁ,ଅଗେ ଚପରାଶିଟାର କେତେ ହାକିମି ଥିଲା— ଅଜିକାଲି ଦପୋଟି କଣେ ବି ସେମିତ ମାନମର୍ଯ୍ୟାଦା ପାଉ ନାହିଁ ।" ସାମନ୍ତରାୟ କହିଲେ, "ହଁ, ଅଜିକାଲି ତ ସମସ୍ତେ ଶିକ୍ଷିତ ହେଲେ— ଆଖି ଫିଟିଗଲା ସମସ୍ତଙ୍କର । ଅଉ କିଛି ଲକ୍ଷ୍ୟରେ ଫିଟି ନାହିଁ ଯେ, ଅଖି ଫିଟିଛି କାହା ପାଖରେ ଧନ ଅଛି —କଲ କୌଶଳରେ ତାହା-ଠାରୁ କପର ଅଦାୟ କରିବେ, ସେଥିପାଇଁ ଯାବତ ଫନ୍ଦ, ଯାବତ ପେଚ —ଏହି······।" ସାମନ୍ତରାୟ ବାଧା ଦେଇ କହିଲେ, "ତମର ଆଉ କେତେ ଧନ ଯେ ! ଧନ, ସମ୍ପତ୍ତି, ଲକ୍ଷ୍ୟ ନେଇ ଘାଣ୍ଟି ହେଉଛ କାହିଁକି ? ଦାନ ଧର୍ମ କର······ତୀର୍ଥ ବ୍ରତ କର । ଅଉ କାହାପାଇଁ ବୃଥାରେ ଧନ ଧନ ହେଉଛ ?" ମଙ୍ଗରାଜଙ୍କର ମୁହଁଟା ଲାଲ ହୋଇ ଉଠିଲା ରାଗରେ । କିନ୍ତୁ ତାହା ସେ ଯଉପରୋନାସ୍ତି ଚେଷ୍ଟାରେ ଗୋପନ

ରଣି ସହଜ କଣ୍ଠରେ କହିଲେ, "ହଁ, ମୁଁ ବି ସେଇଆ ସ୍ଥିର କରିଛି, ବାଙ୍କାଡକ କପରୁ ଅଦାୟ ଅସୁଲ କରିନେଲେ କାଶୀ ଯାଇ ବାବା ବିଶ୍ୱନାଥଙ୍କର ଦର୍ଶନ କରି ଆସିବି । ତା ପରେ ଈଶ୍ୱରଙ୍କର ନାମ ନେଇ ଘରେ ବସି—ଏ ମହାଜନୀ ଜଞ୍ଜାଳକୁ ଛାଡିଦେବି ।"

"ହଁ, ସେଇଆ କର, ଟଙ୍କା ପଇସା କଣ ସ୍ୱର୍ଗ ନେବ ?"

ଅନ୍ୟାନ୍ୟ କେତେକ କଥାବାର୍ତ୍ତା ପରେ ସଦାନନ୍ଦ ସାମନ୍ତରାୟ ଉଠିଗଲେ । ମଙ୍ଗରାଜେ ଉମାକୁ ପାଖକୁ ଡାକି କହିଲେ, "ଦେଖିଲୁ କାଳର ଗତି ! ଯ୍ୟାର କଣ ଟଙ୍କା ନାହିଁ ନା ଧର୍ମ କରିବା ଭଳି ବୟସ ହୋଇ ନାହିଁ ? ମୋତେ କହୁଛି ଦାନ ଧର୍ମ କର, କିନ୍ତୁ ନିଜ ବେଳକୁ ସେ ବୁଝି ପାରୁ ନାହିଁ । କହନ୍ତି ପରା—ଅପଣା ଆଖିକୁ ଆଙ୍ଗୁଳି ଯାଏ ନାହିଁ । ମୁଁ କପଟା ଖସିଗଲେ ସେ ଶତପଥୀର ବାକୀ ଜମି ଦୁଇମାଣ ହାତରେ ପକାଇବ । ହୁଁ ! ଜଗନ୍ନାଥ ମଙ୍ଗରାଜ ସହଜରେ ଛାଡି ଦେଇଛି ପରା ! ଦେଖିବୁ ସଦା କପରୁ ସେ ଜମିକୁ ନେବ । କାଲି ଆଗ ନାଲିସଟା ଦାଏର କରି ଆସେଁ ।"

ଉମା ଟୋକ ଗିଳି ଟିକିଏ ଇତସ୍ତତଃ କରି କହିଲା, "ସତେ-ଅଜ୍ଜା, ଆପଣଙ୍କର କଣ ଅଳ୍ପ ଧନ ଅଛି କି ? ଯାଆନ୍ତୁ ତୀର୍ଥ ବୁଲି ଦାନ ଧର୍ମ କରି ଆସିବେ । ଭାଗବତରେ ଲେଖିଛି ପରା—'ଧନ ଅର୍ଜିଲେ ଧର୍ମ କରି, ଧର୍ମେ ପ୍ରାପତ ନରହରି'........"

"ହଇରେ, ତୋର ଏଡ଼େ ଧର୍ମଜ୍ଞାନ କେବେଠୁ ହେଲା ମ ? ଗଜଡ଼ ! ଅଶୀବର୍ଷରେ ଉମର ନାବାଳକ ଯାଏ ନାହିଁ ପରା ! ପଚ୍ଚନାୟକ ସାଆନ୍ତଙ୍କୁ ତୁ ପୁଣି ଆଜି ଜ୍ଞାନ ବୁଝାଇଲୁ ? କାଳ ତ ଏହା କଲା, ତୁ କଣ କହନ୍ତୁ !"

ଢ଼ମା ଉପରେ ଥର ଜଟିଳେ । କହିଲ,"ଆଜ୍ଞା, ମୁଁ ଆପଣଙ୍କୁ ଧର୍ମ ଶିଖାଇବା ଲୋକ !" ମଙ୍ଗରାଜେ କହିଲେ, "ହରିରେ ! ମୁଁ ତୀର୍ଥକୁ ଗଲେ ଏ ସମ୍ପତ୍ତି ରହିବଟି ? ସମସ୍ତେ ତ ମୋ ଗୋଡ଼କୁ ଗୃହିଁ ବସିଛନ୍ତି । ମୋର କଣ ଭଲ ଜଣା ଅଛି କହିଲ, ମୁଁ ତୀର୍ଥ କରି ପୁଣ୍ୟ ଅର୍ଜନ କରିବାକୁ ଯିବି ? ପୁଣ୍ୟ ଅର୍ଜିଛି ବୋଲି ତ ଅଳ୍ପ ଅଚଳାଚଳ ସମ୍ପତ୍ତିର ମାଲିକ ହୋଇଛି । ତୀର୍ଥ କଲେ ଏହାଠାରୁ ଅଧିକ କଣ ଗୁଡ଼ାଏ ହେବ ? ଯେ ପାପୀ ସେ ସିନା ଯିବ ତୀର୍ଥ କରି ପାପ ଛଡ଼ାଇବ—ମୁଁ ଯେ ମହାଜନୀ କାରବାର କରୁଛି, ଅନ୍ୟାୟରେ ତ କାହାଠାରୁ ଦୁଇପଇସା ନେଉ ନାହିଁ –ସଦେଇ ସାନ୍ତରା ଆଜି ସିନା ବଡ଼ ବୈଷ୍ଣବ ହୋଇଗଲା ! ଯେତେ ଲୋକଙ୍କର ତଣ୍ଟି ଚିପିଛି, ସେ ଯଦି ଶାଗୁଣା ଗାଣ୍ଡିରେ ଠିକ୍ ନ ହେବ, ମୋ ନାଁ । ଜଗନ୍ନାଥ ମଙ୍ଗରାଜ ନୁହେଁ !"

ଏକାଦଶବର୍ଷୀୟା କଣୋଗ୍ରାଟି ଦୌଡ଼ିଆସି କହିଲା, "ବାପା ! ତମେ କଣ ଆଜି ଗାଧୋଇବ ନାହିଁ ?" ମଙ୍ଗରାଜେ କହିଲେ, "ହଁ, ମା ! ଯାଉଛି । ମୋତେ ତ ଜଳେଇ ପୋଡ଼େଇ ମାରିଲେ, ମୁଁ କଣ କରିବି ? ଏତେ ବେଳଯାଏ ପେଟକୁ ଟୋପାଏ ପାଣି ଯାଇ ନାହିଁ, ସେ କଥା କିଏ ବୁଝୁଛି ?" ତା ପରେ ପୂର୍ବବତ୍ କାଗଜପତ୍ରରେ ମନୋନିବେଶ କଲେ ।

କଣୋଗ୍ରାଟିର ନାଁ । 'କଣୋଗ୍ରା' । ସେ ମଙ୍ଗରାଜଙ୍କର ପାଖକୁ ଆଉ ଟିକିଏ ଘୁଞ୍ଚି ଯାଇ କହିଲା, "ଏ କଣ ? ପୁଣି କାମ କରି ବସିଲ ଯେ ! ବେଳ କେତେ ହେଲଣି ଜାଣିଛ ? ମଙ୍ଗରାଜେ ଆକାଶକୁ ଗୃହିଁ ଦେଇ କହିଲେ, "ନା, ବେଶୀ ବେଳ ହେବ ନାହିଁ ଯେ—ଠିକ୍ ଦିପହର ହେବ ।" "ହୁଁ ! ଦିପହର ହେବ, ନା ? ଅଢ଼େଇ ପହର ବେଳ

ହେଲଣି । ମୋତେ ଭାରି ଭୋକ ହେଉଛି, ଚାଲ ।" କିଶୋରୀ ମଙ୍ଗରାଜଙ୍କର ବଡ଼ ଆଦରଣୀ କନ୍ୟା । ତାର ଇଚ୍ଛା ବିରୁଦ୍ଧରେ ଆଉ ବସି ରହିବାକୁ ମଙ୍ଗରାଜଙ୍କର ଇଚ୍ଛା ହେଲା ନାହିଁ । ସେ କାଗଜପତ୍ର–ସବୁ ବାକ୍ସରେ ବନ୍ଦ କରିବାକୁ ଲାଗିଲେ । କିଶୋରୀ ଯୁବକଙ୍କୁ ଉଦ୍ଦେଶ୍ୟ କରି କହିଲା, "ବାପା ! ଏ କିଏ ?" ମଙ୍ଗରାଜେ ବିରକ୍ତି ଭାବରେ କହିଲେ—"ମଙ୍ଗରାଜଙ୍କ ଛଡ଼ା ଏ ରାଜ୍ୟରେ ଆଉ କିଏ ଅଛନ୍ତି କି ? ଯାହାର ଯାହା ଦରକାର ହେଲା, ଯାଅ ମଙ୍ଗରାଜଙ୍କ ପାଖକୁ—ଚାନ୍ଦା କଣ, ଭେଦା କଣ.........କି ହୋ ! ତମ ପିତୃପିତାମହ କଣ ମଙ୍ଗରାଜଙ୍କ ଘରେ ଅସରପି ତୋଡ଼ା ଥୋଇ ଯାଇଛନ୍ତି ?" କିଶୋରୀ ପିତାଙ୍କର କଥା କାନକୁ ନ ନେଇ ଯୁବକଙ୍କୁ ଲକ୍ଷ୍ୟ କରି ପଚାରିଲା, "ଆପଣଙ୍କ ଘର କେଉଁଠି ?"

ମଙ୍ଗରାଜଙ୍କର ଢଙ୍ଗଢାଙ୍ଗ ଦେଖି ବିଶେଷତଃ 'ବ୍ରାହ୍ମଣ ପିଲା, ବୃତ୍ତି ହୋଇ ପାରୁ ନଥିବ,' 'ସ୍କୁଲ ପିଲା, ଚାନ୍ଦା ପାଇଁ ଆସିଥିବ' ଇତ୍ୟାଦି ତୁଚ୍ଛ ତାଚ୍ଛଲ୍ୟ କଥା ଶୁଣି ଯୁବକଙ୍କର ହୃଦୟ ବିରକ୍ତିରେ ପୂରି ଉଠିଛି । ପ୍ରତି ମୁହୂର୍ତ୍ତରେ ତାଙ୍କର ଇଚ୍ଛା ହେଉଛି ସେଠାରୁ ଉଠି ଚାଲିଯାନ୍ତେ; ମାତ୍ର ନିଜର ଭବିଷ୍ୟତ ଚିନ୍ତା କରି ଯାଇ ପାରୁ ନାହାନ୍ତି । ସରଳପ୍ରାଣା କିଶୋରୀର ସହଜ ପ୍ରଶ୍ନଟି ତାଙ୍କ ବ୍ୟଥିତ ହୃଦୟକୁ ଅଧିକ ବ୍ୟଥିତ କରି ପକାଇଲା । ସେ ଯାହା ପାଖକୁ ଆସିଛନ୍ତି, ସେ କୌଣସି କଥା ପଚାରିବା ଦୂରେ ଥାଉ ଯାବତ୍ ବ୍ୟଙ୍ଗ ବିଦ୍ରୂପ କରିବାକୁ ଛାଡ଼ୁ ନାହାନ୍ତି । ଏ ବାଳିକା ପ୍ରଶ୍ନର ବା ମୂଲ୍ୟ କଣ ? ଉତ୍ତର ଦେବାକୁ ଯୁବକଙ୍କର ଇଚ୍ଛା ହେଲା ନାହିଁ । ମନ୍ତ୍ରମୁଗ୍ଧ ପରି ସେ ବାଳିକାର ମୁହଁକୁ ଚାହିଁ ରହିଲେ କେବଳ । ମଙ୍ଗରାଜେ ଉତ୍ତେଜିତ ଭାବରେ କହିଲେ, "ଓହୋ ରେ ନବାବ ! ପଚାରିଲେ କଥାର ଉତ୍ତର ବି ନାହିଁ ? କିରେ, ତୋର ଘର କେଉଁଠି ?"

ଏହି ଜଗନ୍ନାଥ ମଙ୍ଗରାଜ ? ଯାହାଙ୍କର ନାମ ଶୁଣି ପଦର କୋଣ ଗୃହା ଅତିକ୍ରମ କରିବାକୁ ପଡୁଛି ? ଏତେ ଅଭଦ୍ର ସେ ? କଥା ପଦେ କହିବାକୁ ଶିଖି ନାହାନ୍ତି । ଜଣେ ଅପରିଚିତ ଭଦ୍ରବ୍ୟକ୍ତିଙ୍କ ସଙ୍ଗରେ ଚାକର ଠାରୁ ବଳି ତୁଚ୍ଛ ତାଚ୍ଛିଲ୍ୟ ବ୍ୟବହାର ! ଘୃଣାରେ ଯୁବକଙ୍କର ମୁଖ ବିକୃତ ହୋଇଗଲା । ମଙ୍ଗରାଜେ କାଗଜପତ୍ର ନେଇ ବ୍ୟସ୍ତ ଥିବାରୁ ତାହା ଲକ୍ଷ୍ୟ କରିପାରିଲେ ନାହିଁ ।

ଲକ୍ଷ୍ୟ କଲା ତାଙ୍କର କିଶୋରୀ କନ୍ୟା 'କିଶୋରୀ' । ଯୁବକଙ୍କର ବେଦନାକୁ ସେ ମଧ୍ୟ ପ୍ରାଣରେ ଅନୁଭବ କଲା ।

ମଙ୍ଗରାଜଙ୍କ ପ୍ରଶ୍ନ ନିତାନ୍ତ ଅଭଦ୍ରୋଚିତ ହେଲେହେଁ ଯୁବକ ଉତ୍ତର ନ ଦେଇ ରହିପାରିଲେ ନାହିଁ । କହିଲେ, "ମୋ ଘର ଆଜ୍ଞା, ଚବିଶପ୍ରଗଣା । ଶୁଣିଲି ଆପଣଙ୍କର ଗୋଟିଏ ଲୋକ ଆବଶ୍ୟକ..."

"ହଁ, ହଁ, ମୋର ଗୋଟିଏ ଲୋକ ଦରକାର ; ସେ କନ୍ଦ୍ରି ଯୋଉଏ କାମ କରିବ । ମହାଜନୀ କାଗଜପତ୍ର ବୁଝିବ—ଆଉ ମୋର ଏହି ଝିଅଟିକୁ ଘଣ୍ଟାଏ ଘଣ୍ଟାଏ ପଢ଼ାଇବ । ତୁ କେତେ ଯାଏ ପଢ଼ିଛୁ ?"

"ଏଣ୍ଟ୍ରାନ୍ସ ଫାଷ୍ଟ କ୍ଲାସକୁ ପ୍ରମୋଶନ ପାଇଥିଲି, ଫେବୃୟାରୀରେ ବାପା ମରିଗଲେ । ଆଜ......"

"ଆଚ୍ଛା, ବେଶ, ବେଶ୍, ତୁମ୍ଭର ନାମ କଣ ?"

"ରାଜକିଶୋର ପଟ୍ଟନାୟକ ।"

"କରଣ ତା ହେଲେ ?"

"ଆଜ୍ଞା !"

ମଙ୍ଗରାଜେ କାଗଜପତ୍ର ରଖିଦେଇ କନ୍ୟା ସହିତ ଭିତରକୁ ଗଲେ । ପ୍ରାୟ ପାଞ୍ଚ ମିନିଟ୍ ପରେ ଡାକିଲେ, "ଆସ ହେ ରାଜ-କିଶୋର !"

ମଙ୍ଗରାଜଙ୍କର ସମ୍ବୋଧନ 'ତୁ'କାରରୁ ହଠାତ୍ 'ତୁମେ' ଉପରକୁ ଉଠିବାର ଦେଖି ରାଜକିଶୋରଙ୍କୁ ବଡ଼ ଆଶ୍ଚର୍ଯ୍ୟ ବୋଧହେଲା। ସେ ସେହି ବିଷୟ ଭାବୁ ଭାବୁ ଘରଭିତରକୁ ଉଠିଗଲେ ।



## —ଦ୍ୱିତୀୟ ପରିଚ୍ଛେଦ—

ରାଜକିଶୋର ଜଗନ୍ନାଥ ମଙ୍ଗରାଜଙ୍କ ଘରେ ରହିବାର ଦୁଇ ମାସ ହୋଇଗଲାଣି । ତାଙ୍କର ଶିକ୍ଷକତାରେ ମଙ୍ଗରାଜ ଯେତେ ଦୂର ସନ୍ତୁଷ୍ଟ, ଗୁମାସ୍ତାଗିରିରେ ତତ୍ତୁଁ ବଳି ଅସନ୍ତୁଷ୍ଟ । ଚକ୍ରବୃଦ୍ଧି ସୁଧ ହିସାବରେ କପଟର ଖାତକଙ୍କୁ ଭୁଲାଇ ଟଙ୍କାରେ ଦୁଇ ଅଣା ଠକି-ନେବାକୁ ହେବ, କପଟ କଡ଼ା କଡ଼ା କଥା କହି ଖାତକଙ୍କୁ ପ୍ରତିବାଦ ବା ଆପତ୍ତି କରିବାର ଅବସର ଦେବାକୁ ହେବନାହିଁ,'ଗୁମାସ୍ତା ପାଉଣା', 'ଦଅଙ୍କ ପାଉଣା', 'ନୂଆ ଖାତା ଖର୍ଚ୍ଚ' ଇତ୍ୟାଦି କପଟ ଅଦାୟ କରିବାକୁ ହେବ—ଏ ସମସ୍ତ ଦୁଇ ମାସ ଧରି ସେ ରାଜକିଶୋରଙ୍କୁ ଶିଖାଇ ପୁଣି ଏପର୍ଯ୍ୟନ୍ତ ତାଙ୍କୁ ମନୋମତ ଗୁମାସ୍ତାଟି କରି ଗଢ଼ି-ପାରିଲେ ନାହିଁ । ସେଥିପାଇଁ ମଙ୍ଗରାଜଙ୍କର ମନୋଦୁଃଖ କହିଲେ ନ ସରେ । ଅନେକ ସମୟରେ ଭାବନ୍ତି, ରାଜକିଶୋରଙ୍କୁ ବିଦାୟ କରି-ଦେବେ । ଏପରି ଶାନ୍ତ ଶିଷ୍ଟ ପରଦୁଃଖକାତର ଗୁମାସ୍ତାଟିଏ ରଖି ବା ତାଙ୍କର ଲାଭ କଣ ? କିନ୍ତୁ କାର୍ଯ୍ୟରେ ପରିଣତ କରିପାରନ୍ତି ନାହିଁ । ରାଜକିଶୋରଙ୍କ ପରି ସୁଶୀଳ, ସଚ୍ଚରିତ୍ର, ସତ୍ୟବାନ୍ ଓ ବିଦ୍ୱାନ୍ ଲୋକଟିଏ କଣ ସେ ସହଜରେ ପାଇବେ ?

ଦିନ ଗୋଟାଏ ସମୟ ହେବ, ରାଜକିଶୋର ମହାଜନୀ ସିରସ୍ତା ଘେନି ଦାଣ୍ଡ ଘରେ ବସିଛନ୍ତି । ମଧୁ, ରଘୁ, ସାଧୁ ଓଗେର ଖାତକ

ଦଶଜଣ ହେବେ ତାଙ୍କୁ ବେଢ଼ିଛନ୍ତି । ଅଜ ଜଣେ ଖାତକ ଅଫିଁ ଦାଣ୍ଡି ଦ୍ୱାର ସାମନା ସନ୍ତପ୍ତ ଉତ୍ତପ୍ତ ଧୂଳିରେ ଲମ୍ବ ହୋଇ ଦଣ୍ଡ ପ୍ରଣାମଟାଏ କରି କହିଲା, "ଆଜ୍ଞା, ମୋ ଗୁହାରି ଟିକିଏ ବୁଝିଦେଲେ ମୁଁ ଯାନ୍ତି ଗୁଲ—ଠିଆ ହୋଇ ପାରୁ ନା ।"

ରାଜକିଶୋର ଦେଖିଲେ, ତା ଗୋଡରେ ପଟି ଭଡା ହୋଇଛି । ହାତର ଆଙ୍ଗୁଠିଗୁଡ଼ିକ କେମ୍ପା କେମ୍ପା—ତହିଁରୁ ପୁଣି ଦୁଇଟି ରୋଗରେ କ୍ଷୟପ୍ରାପ୍ତ । ଲୋକଟିର ଦେହରୁ ଶୀତଦିନ ସକାଳେ ଗଛରୁ କାକର ଝରିଲା ପରି ଅଜସ୍ର ଧାରରେ ଝାଳ ବହୁଛି । ଉପରେ ଅସହ୍ୟ ତାପ, ଖରାରେ ମୁଣ୍ଡ ଫାଟି ଯାଉଛି । ଉତ୍ତପ୍ତ ଧୂଳି ଉପରେ ଠିଆ ହୋଇ ନ ପାରି ସେ ଥରେ ଏ ଗୋଡ଼ ଥରେ ସେ ଗୋଡ ଟେକି ଯନ୍ତ୍ରଣାରେ ଛଟପଟ ହେଉଛି । କୁଷ୍ଠରୋଗୀ ସେ—ମହାଜନଙ୍କ ପିଣ୍ଡାକୁ ଆସିବାର କ୍ଷମତା ନାହିଁ ତାର । ରାଜକିଶୋରଙ୍କ ହୃଦୟ କରୁଣାରେ ବିଗଳିତ ହୋଇଗଲା । ସେ ମନେ ମନେ କହିଲେ, "ପ୍ରଭୁ ! ଶତ୍ରୁକୁ ସୁଦ୍ଧା ଏପରି ଶାସ୍ତି ନ ଦିଅନ୍ତୁ ।" ତା ପରେ ସେ ରୋଗୀକୁ ଉଦ୍ଦେଶ୍ୟ କରି କହିଲେ, "ତମ ନାଁ କଣ ?"

"ଆଜ୍ଞା, ମୋ ନାଁ ନାଥି ସ୍ୱାଇଁ ।"

"କଣ କହୁଚ ?"

ନାଥି କପାଳରୁ ଝାଳ ପୋଛି କହିଲା, "ଟଙ୍କା କୋଡ଼ିଏଟା କରଜ ନେଇଥିଲି—୨ ବର୍ଷ ହୋଇଗଲାଣି ଯେ······"

"ଖାଲି ସୁଧ ଦେବ ନା ଅସଲ ସୁଧ ସମୁଦାୟ ଦେବ ?"

"ଆଜ୍ଞା, ହିସାବ କରନ୍ତୁ, ସମୁଦାୟ ଦେବି ।"

ରାଜକିଶୋର ଅନ୍ୟାନ୍ୟ ଖାତକଙ୍କର କାମ ଛାଡ଼ି ଆଗ ନାଥି ଖାତା ବାହାର କଲେ । ପାଞ୍ଚ ମିନିଟ ମଧ୍ୟରେ ହିସାବ କରି କହିଲେ,

"ଦୁଇ ବର୍ଷର ଚକ୍ରବୃଦ୍ଧି ହାରରେ ଅସଲ ସୁଧ ମିଶି ଟ ୬୮୧, ଗୁମାସ୍ତା ପାଉଣା ଟଙ୍କାରେ ଅଣାଏ ହିସାବରେ ତିନି ଟଙ୍କା ତେର ଅଣା ତିନି ପାହୁଲ, ଦଉଁଙ୍କ ପାଉଣା ଟଙ୍କାଏ, ନୂଆ ଖାତା ଖର୍ଚ୍ଚ ଦୁଇ ବର୍ଷକୁ ଦୁଇ ଟଙ୍କା—ଗୋଟାଏ ମୋଟ ଅଠଷଠି ଟଙ୍କା ଅଣାଏ ତିନି ପାହୁ।"

"ଆଜ୍ଞା, ମୋର ମୂଳ ଟଙ୍କା କୋଡ଼ିଏଟା ମୋଟେ। ତିନି ବରଷରୁ କଣ ବେଶୀ କହୁଛ ଆପଣ? ସୁଧରୁ କଣ କିଛୁ ଛାଡ଼ ମିଳିବ ନାହିଁ? ତିନି ତିନିଟା ପିଲା—ମୋର ଅବସ୍ଥା ତ ଦେଖୁଛ। ଗରିବଟା ମରିଯିବ।" ସଙ୍ଗେ ସଙ୍ଗେ ନିଧି ଲମ୍ବ ହୋଇ ସେହି ଗରମ ବାଲିରେ ଶୋଇ ପଡ଼ିଲା। ରାଜକିଶୋରଙ୍କର ହୃଦୟଟା ବଡ଼ ନରମ। ସେ ତାର ଦୁଃଖ ସହି ନ ପାରି କହିଲେ, "ହଉ, ଗୁମାସ୍ତା ପାଉଣାଟା ଛାଡ଼ିଦେଲି, ଆଉ ତ କାହିଁରୁ କାଟିପାରିବି ନାହିଁ।" ନିଧି କାତର କରୁଣ କଟାକ୍ଷରେ ରାଜକିଶୋରଙ୍କ ମୁହଁକୁ ଚାହିଁ ରହିଲା। ରାଜକିଶୋର ଟିକିଏ ଚିନ୍ତା କରି କହିଲେ, "ଅଚ୍ଛା, ନୂଆ ଖାତା ଖର୍ଚ୍ଚ ବି ଛାଡ଼ିଦେଲି। ତମ ଲାଗି ମୁଁ ମାଲିକଙ୍କ କହି ପୋଛୁ···"···କଥାଟା ସମାପ୍ତ କରିବାକୁ ରାଜକିଶୋର ଅବସର ପାଇପାରିଲେ ନାହିଁ। ବିଜୁଳି ପରି ମଙ୍ଗରାଜେ ସହସା ଅବିର୍ଭୂତ ହୋଇ ବ୍ୟଙ୍ଗ ସ୍ୱରରେ କହିଲେ, "ଆହା, ବାବୁଙ୍କର ଅମର କି ଦୟା। ଦେହଟା ଯେମିତି ଖାଲି ଦୟା ଧର୍ମରେ ଗଢ଼ା। 'ମୁଁ ମାଲିକଙ୍କୁ କହି ପୋଛୁ'······କାହିଁକି? ଏତେ କହିଲା ପୋଛୁଲାବାଲା କେବେଠାରୁ ହେଲ ମ? ମଙ୍ଗରାଜଙ୍କ ଘରେ ରହିବା ଠାରୁ ନା ତା ପୂର୍ବରୁ? ଯାହା କହନ୍ତି ଛୋଟ ତୁଣ୍ଡରେ ବଡ଼ କଥା। ଯାବତ ଅର୍ଜିତ, ଯେ ଟଙ୍କା କପର ଦେଖି ନାହାନ୍ତି—ପର ଦ୍ୱାରେ ମୁଣ୍ଡ ବିକନ୍ତି ଟଙ୍କା ପାଇଁ, ସେ ଦାନଶୀଳ ନ ହେବେ ବା କାହିଁକି? ଟଙ୍କା କପର କଷ୍ଟରେ ଆସେ, ସେ କଥା କଣ ଜଣା ପଡ଼ୁଛି? ସିରସ୍ତାରେ ବସି ଦ କଲମ ଘଷିଦେଲେ କି

ଖାଇ ପିଇ ମାସ ଶେଷକୁ ସେଇକଡ଼ା ଟଙ୍କା ମିଳିଲା—ଚଳିବା ଭଳି ? ତମର ବ୍ୟବହାର ବଡ଼ ଖରାପ ହେଉଛି ରାଜୁ ! ସବୁଦିନ ସବୁବେଳେ ତମ ସାଙ୍ଗରେ ମୁଁ ଅଳି ପାରି କରିପାରିବି ନାହିଁ । କାଲି ପରି ଏଇ ସୁଧ ଛାଡ଼ ନେଇ ଏତେ କଥା । ଛଳ ପଣିଗଲ ଯେ ଦିନଟା ଉପବାସ ରହିଲି ? ଆଜି ପୁଣି ସେହି କଥା ! ଦିମାସ ହେଲା ରହିଲଣି ଯେ ଆଜିପର୍ଯ୍ୟନ୍ତ ମୁଁ ତମକୁ ଛାଡ଼ି ଦୁଇଘଣ୍ଟା ଲାଗି ସୁଦ୍ଧା କୁଆଡେ ଯାଇ-ପାରୁ ନାହିଁ । ଛାଡିଦେଲେ ତମେ ଯେ କଣ କରି ବସିବ......।”

ରାଜକିଶୋର ବିନା ପ୍ରତିବାଦରେ ମଙ୍ଗରାଜଙ୍କର ସମସ୍ତ କୁକଥା ଅକଥା ହଜମ କରି କଲମ ଚଳାଇବାକୁ ଲାଗିଲେ ।

ମଙ୍ଗରାଜେ ଗଳାରେ ଅଳି ଟିକିଏ ଜୋର ଦେଇ କହିଲେ, “ଅଚ୍ଛା, କହିଲ ତମକୁ ଆଣି ମୁଁ ରଖିଛି ମୋର ଲାଭ କରିବ କି କ୍ଷତି କରିବ ?” ରାଜକିଶୋର ନିରୁତ୍ତର । ମଙ୍ଗରାଜେ ଚ୍ଛେପ ଢୋକି କହିଲେ, “ହଁ, ସେ ଛାଡ଼ ନେବ—କାହିଁକି ? ସେ କଣ ନିଃସ୍ୱ ? ତାର କଣ କିଛି ନାହିଁ ? ସେ ଅମ୍ବତୋଟାଟା ଦେଇ ଦେଉ ନାହିଁ ?” ତାପରେ ନିର୍ଧି ଉପରେ ପଡ଼ିଲା କଟାକ୍ଷ । ତା ସହିତ ଯେଉଁ ଅଭିଧାନ-ଛଡ଼ା ଭାଷାରେ କଥୋପକଥନ କଲେ, ସେ ସବୁ ଲେଖିବା ଅପେକ୍ଷା ପାଠକମାନେ ଅନୁମାନ କରି ନେବା ଭଲ ।

ରାଜକିଶୋରଙ୍କର ରୁଟିନ୍‌ବନ୍ଧା କାମ । ସକାଳ ସାତଟାରୁ ଦଶଟା ପର୍ଯ୍ୟନ୍ତ କିଶୋରୀକୁ ପଢ଼ାଇବେ । ଦଶଟା ପରେ ଗଣ୍ଡାଏ ଖାଇ ଦେଇ ମହାଜନୀ କାଗଜପତ୍ର ଘାଣ୍ଟିବେ ଯେ ଠିକ୍ ସନ୍ଧ୍ୟା ୭ଟା ପର୍ଯ୍ୟନ୍ତ । ପୁଣି ସାତଟାରୁ ନଟା ଯାଏ କିଶୋରୀକୁ ପଢ଼ାଇବେ । ସେ ଦିନ ସନ୍ଧ୍ୟା ସାତଟାରେ ସେ କିଶୋରୀର ପଢ଼ା ଘରକୁ ଯାଉଛନ୍ତି, ମଙ୍ଗରାଜେ କହିଲେ, “ରାଜୁ, ମୁଁ ଦେଖୁଛି ତମେ ମହାଜନୀ ସିବସ୍ତାକୁ ଅଦୌ

ଉପଯୁକ୍ତ ନୁହ । ତମଦ୍ୱାରା ସେ ପେଡ ପାଚ ହେବ ନାହିଁ । ତମେ ଯଦି ଗ୍ରେଫ୍ରେଇ ଗଣ୍ଡାଏ କରି ଦିଅନ୍ତ, ମୁଁ ସେସବୁ···ମୁଠାଏ ଫୁଟାଇ ଦେଇପାରିବ ନାହିଁ ?" ରାଜକିଶୋର ମଙ୍ଗରାଜଙ୍କ କୌଣସି କଥାର ପ୍ରତିବାଦ କରନ୍ତି ନାହିଁ । ସେ ମୁଣ୍ଡ ହଲାଇ ସମ୍ମତ ଜଣାଇଲେ । ମଙ୍ଗରାଜେ କାର୍ଯ୍ୟାନ୍ତରେ ଅନ୍ୟନେ ଚାଲି ଗଲାରୁ ରାଜକିଶୋର ମନେ ମନେ କହିଲେ—ଭଲ କଥା । ଗ୍ରେଫ୍ରେଇ କଣ, ତାଠାରୁ ହୀନ କାର୍ଯ୍ୟ ସୁଦ୍ଧା କରିବାକୁ ପ୍ରସ୍ତୁତ ଅଛି ; କିନ୍ତୁ ନିରୀହ ଗରିବ ଖାତକଙ୍କ ଉପରେ ନିର୍ମମ ବ୍ୟବହାର କରିବା ମୋଦ୍ୱାରା ହେବ ନାହିଁ । ସେହି ଦିନଠାରୁ ତାଙ୍କର ରୁଟିନ୍ ବଦଳିଗଲା ।

ଜଗନ୍ନାଥ ମଙ୍ଗରାଜଙ୍କର ପରିବାର ମଧ୍ୟରେ ସେ ଓ ତାଙ୍କର ଏକମାତ୍ର କନ୍ୟା କିଶୋରୀ । ଉମା ଭିନ୍ନ ତାଙ୍କର ଦ୍ୱିତୀୟ ଚାକର ନାହିଁ । ପୂଜାରୀ ହାତରେ ତୃପ୍ତି ଆସିବ ନାହିଁ ବୋଲି ଛପନ ବର୍ଷ ବୟସରେ ମଙ୍ଗରାଜେ ଦୁଇ ଓଳି ନିଜ ହାତରେ ମୁଠାଏ ଫୁଟାଇ ଦିଅନ୍ତି । କିଶୋରୀ ମଙ୍ଗରାଜଙ୍କର ବଡ଼ ଆଦରର କନ୍ୟା । ତାକୁ କୌଣସି କାର୍ଯ୍ୟ କରିବାକୁ ପଡ଼େ ନାହିଁ ।

ଏବେ ଦୁଇମାସ ହେବ ମଙ୍ଗରାଜେ ଗ୍ରେଫ୍ରେଇ କାର୍ଯ୍ୟରୁ ଛୁଟି ପାଇଛନ୍ତି । ଉମା ପରିବାଙ୍କଟା, ମସଲାବଟା ପ୍ରଭୃତି ବାହାର କାର୍ଯ୍ୟ କରିଦିଏ । ରାଜକିଶୋର ଚୂଲି ପାଖରେ ବସି ମୁଠାଏ ଫୁଟାଇ ଦିଅନ୍ତି କେବଳ । ତଥାପି 'ରନ୍ଧନଂ ବନ୍ଧନଂ ପୁଂସାଂ ।' ଏକେତ ସୁକୁମାର ବୟସ, ସେଥିରେ ପୁଣି ଅଭ୍ୟାସ ନାହିଁ । ଚୂଲି ପାଖରେ ବସିବାଟା ରାଜକିଶୋରଙ୍କୁ ବଡ଼ ବାଧେ । ତା ଉପରେ ପୁଣି ମଙ୍ଗରାଜଙ୍କର ଲାଞ୍ଛନା । ଅଳ୍ପ ଲୁଣିଆ ଡାଲି ଅଲଣା, ଏହିପରି କେତେ କଣ ନିନ୍ଦାବାଦ ଶୁଣିବା ସଙ୍ଗେ ସଙ୍ଗେ ଗାଳି ଗଞ୍ଜଣା ମଧ୍ୟ ସହିବାକୁ ପଡ଼େ ।

ପେଟକୁ ଦେଇ ପିଠିକି ମାରିବା ନୀତି ମଙ୍ଗରାଜଙ୍କ ପାଖରେ ଚଳୁଥା—ସେ ପେଟକୁ ନ ଦେଇ ପିଠିକୁ ମାରି ଜାଣନ୍ତି ବେଶ୍। ତାଙ୍କର ଇଚ୍ଛା, ସେ ରାଜକିଶୋରଙ୍କଠାରୁ ଗଣି ଗଣି ଚବିଶ ଘଣ୍ଟା କାମ ନେବେ, ଅଳ୍ପ ଭିକାରୀକୁ ଦେଲା ପରି ଶାଗ ଭାତ କରି ମୁଠାଏ ଦେବେ—ସେ ରୁଚିକର ହେଉ ବା ନ ହେଉ। ରୁଚିକର ନ ହେବାର ତ କୌଣସି କାରଣ ନାହିଁ। ଯେ ପେଟ ବିକଳରେ ଚାକିରି କରିବାକୁ ଆସିଛି, ତାର ପୁଣି ଭଲ ମନ୍ଦ ବାଛିବାର କି ଅଧିକାର ଅଛି ?

ରାଜକିଶୋର ରହିଲେ; କିନ୍ତୁ ମନ ମାନିଲା ନାହିଁ। ମନୁଷ୍ୟ ହୃଦୟରେ ଯେଉଁଠି ଦୟା, ଦାକ୍ଷିଣ୍ୟ, ସ୍ନେହ, ପ୍ରୀତି କିଛି ନାହିଁ—ଅଛି କେବଳ ମୋହମାୟା ଧନ ଉପରେ—ଧନହିଁ ଏକମାତ୍ର ସମ୍ବଳ—ଧନହିଁ ଜୀବନ ସର୍ବସ୍ୱ—ପ୍ରାଣଠାରୁ ଧନର ମୂଲ୍ୟ ବେଶୀ—ଧନ ଲାଗି ଯେ କୌଣସି ଅକର୍ମ କୁକର୍ମ କରିଯାଇପାରେ—ଧନଲାଗି ମୃତ୍ୟୁ-ଯନ୍ତ୍ରଣାପୂର୍ଣ୍ଣ ନରକ କୁଣ୍ଡରେ ଝାସ ଦେବାକୁ ଯେ କୁଣ୍ଠିତ ନୁହେ, ସେପରି ଲୋକର ଘରେ ତାର ଅଧୀନରେ ରହି କେଉଁ ଲୋକ ଭଲା ମନକୁ ମନାଇପାରିବ ?

ସକାଳୁ ସନ୍ଧ୍ୟାଯାଏ ଅବିଶ୍ରାନ୍ତ କାର୍ଯ୍ୟ—ମୁନିବଙ୍କର ନିତାନ୍ତ ରୁକ୍ଷ ଓ ଅଭଦ୍ରୋଚିତ ବ୍ୟବହାର, ସେଥିରେ ପୁଣି ଟଙ୍କା ପାଞ୍ଚଟା ଦରମା। ସେଠାରେ ରହିବାକୁ ରାଜକିଶୋରଙ୍କର ଆଦୌ ଇଚ୍ଛା ନ ଥିଲେ ସୁଦ୍ଧା ସେ ରହିବାକୁ ବାଧ୍ୟ ହେଲେ। ଇଚ୍ଛା କରିଥିଲେ ଅନ୍ୟତ୍ର ଯାଇ ଚାକିରି ଅନ୍ୱେଷଣ କରିପାରିଥାନ୍ତେ। ବେଶୀ ଦରମା ନ ପାନ୍ତୁ, ଏହାଠାରୁ ଅବଶ୍ୟ ଭଲ ଖାଇବାକୁ ପାଇଥାନ୍ତେ ତ—ମିଠା କଥା ଦି'ପଦ ଶୁଣିବାକୁ ପାଇଥାନ୍ତେ ତ; କିନ୍ତୁ ସେ ଅନ୍ୟତ୍ର ଯାଇପାରିଲେ ନାହିଁ କେବଳ କିଶୋରୀ ଯୋଗୁ। କିଶୋରୀର ଶାନ୍ତ ସରଳ ବ୍ୟବ-

ହାର ଓ ଅତ୍ୟଧିକ ସ୍ନେହ ତାଙ୍କୁ ନାଗପାଶ ବନ୍ଧନରେ ପକାଇ-ଦେଲା । ସେ ସବୁ ଜାଣିଶୁଣି ସୁଦ୍ଧା ଶକ୍ତିହୀନ ପରି ମଙ୍ଗରାଜଙ୍କର କବଳରେ ପଡ଼ିରହିଲେ କିଶୋରୀ ମୁହିଁକୁ ଚାହିଁ ।

ରାଜକିଶୋର ଶୈଶବରୁ ପିତୃମାତୃହୀନ ଥିଲେ । କେବଳ ସେତିକି କହିଲେ ତାଙ୍କର ପ୍ରକୃତ ଅବସ୍ଥା ବୁଝାଯିବ ନାହିଁ । ସହାୟ-ସମ୍ବଳହୀନ ଅନାଥ ଥିଲେ ସେ । ପିତାଙ୍କ ମୃତ୍ୟୁର ପନ୍ଦର ଦିନ ପରେ ଯେତେବେଳେ ତାଙ୍କର ମାତୃବିୟୋଗ ଘଟିଲା, ସେତେବେଳେ ତାଙ୍କୁ ଚାରିବର୍ଷ ମାତ୍ର । ମାତୁଳ ବନବିହାରୀ ପଟ୍ଟନାୟକ ଭଗିନୀପତିଙ୍କର ଶୁଦ୍ଧି ଶ୍ରାଦ୍ଧରେ ଯୋଗ ଦେବା ପାଇଁ ଭଗିନୀଗୃହକୁ ଆସିଥିଲେ । ସହସା ସୋଦରର ମୃତ୍ୟୁ ହେବାର ଦେଖି ଅନାଥ ରାଜକିଶୋରକୁ ନିଜ ଗୃହକୁ ଘେନିଗଲେ ।

ବନବିହାରୀ ବାବୁଙ୍କର ଦ୍ୱିତୀୟ ସଂସାର । ଦ୍ୱିତୀୟ ପକ୍ଷଙ୍କ ନିକଟରେ ସ୍ୱାମୀମାନେ ସାଧାରଣତଃ ବଶମ୍ବଦ ହୋଇଥାନ୍ତି — ବନବିହାରୀ ବାବୁ ସେ ନୀତିର ବହିର୍ଭୂତ କାର୍ଯ୍ୟ କରୁ ନ ଥିଲେ — ବିଶେଷତଃ ତାଙ୍କର ଶରୀର ଆଧୁନିକ ଶିକ୍ଷା ସଭ୍ୟତାର ଜଳବାୟୁରେ ପୁଷ୍ଟ ଥିବାରୁ ସେହି ନୀତିଟାକୁ ସେ ଅନ୍ତରର ସହିତ ମାନି ଚଳୁଥିଲେ । କୁମୁଦିନୀଙ୍କର ମୁଖରା ସ୍ୱଭାବ—ତହିଁରେ ମଣି ସହିତ କାଞ୍ଚନର ଯୋଗ ହେଲା । ସ୍ତ୍ରୀଙ୍କ ବିପକ୍ଷରେ 'ଜି' ଶବ୍ଦଟି ପର୍ଯ୍ୟନ୍ତ ଉଚ୍ଚାରଣ କରିବା ଭଳି ସାହସ ତାଙ୍କର ନ ଥିଲା ।

ମାତୁଳାନୀ କୁମୁଦିନୀ ଶିଶୁ ରାଜକିଶୋରକୁ ଦେଖି ଭୈରବୀ ମୂର୍ତ୍ତି ଧାରଣ କଲେ । ବନବିହାରୀ ବାବୁଙ୍କର ସ୍ତ୍ରୀଙ୍କ ବିପକ୍ଷରେ କୌଣସି କଥା କହିବାର ଶକ୍ତି ନ ଥିଲେହେଁ ସ୍ତ୍ରୀଙ୍କ ବାକ୍ୟବାଣ ସହିବାର ଶକ୍ତି ଯଥେଷ୍ଟ ଥିଲା । ସେ କୌଣସି କଥାକୁ ଭ୍ରୂକ୍ଷେପ ନ

କରି ରାଜକିଶୋରଙ୍କୁ ପାଳିବାକୁ ଲାଗିଲେ । ସେଥିପାଇଁ କୁମୁଦିନୀ କେତେ ଦିନଯାଏ ସ୍ୱାମୀଙ୍କ ସହିତ ଅସହଯୋଗ କଲେ – କାନ୍ଦିଲେ, ମୁଣ୍ଡ ପିଟିଲେ, କେତେ ମାସ ପାଇଁ ପିତ୍ରାଳୟକୁ ମଧ୍ୟ ପଳାଇଲେ – ମାତ୍ର କାହିଁରେ କିଛି ଫଳ ହେଲା ନାହିଁ । ବନବିହାରୀବାବୁ ଏକ ଜିଦ୍ ଧରି ବସିଲେ, "ଅସହାୟ ଭଣଜାଟିକୁ ପାଳନ କରିବା ମୋର କର୍ତ୍ତବ୍ୟ । ମୁଁ କୌଣସିମତେ ତାକୁ ଅବହେଳା କରିପାରିବି ନାହିଁ ।" ନାନା ଉପାୟ ଅବଲମ୍ବନ କରି ମଧ୍ୟ କୁମୁଦିନୀ ଯେତେବେଳେ ଦେଖିଲେ କାହିଁରେ କିଛି ଫଳ ହେଲା ନାହିଁ, ସେ ବାଧ୍ୟ ହୋଇ ଦାନ୍ତରେ ଦାନ୍ତ ଚିପି ପଡ଼ିରହିଲେ । କଣ କରିବେ ? ଏଣେ ସ୍ୱାମୀ ଯେ ହାତଛଡ଼ା ହେବା ଉପରେ । ବଞ୍ଚିଥିଲେ କଣ ଦିନେ ସେ ପ୍ରତିଶୋଧ ନେଇପାରିବେ ନାହିଁ ?

ରାଜକିଶୋର କ୍ରମେ ବଢ଼ିବାକୁ ଲାଗିଲେ । ପାଠ ପଢ଼ିବାର ବୟସ ହେଲା । ବନବିହାରୀ ବାବୁ ପଢ଼ାଇବାର ପ୍ରସ୍ତାବ କଲେ । ସେଥିପାଇଁ ପୁଣି କେତେ ପାଲା ଲାଗିଲା । ଶେଷରେ କୁମୁଦିନୀ ପରାସ୍ତ ହେଲେ । ରାଜକିଶୋର ନଅ ବର୍ଷ ବୟସରେ ବିଦ୍ୟାରମ୍ଭ କଲେ । ବନବିହାରୀ ବାବୁଙ୍କର ଚାରୋଟି ସନ୍ତାନ ଥିଲେ; ତଥାପି ସେ ରାଜକିଶୋରଙ୍କୁ ବଡ଼ ଆଦର କରନ୍ତି । ରାଜକିଶୋର ମଧ୍ୟ ତାଙ୍କୁ ବାପା ବୋଲି ଡାକି ତାଙ୍କର ଅଧିକ ସ୍ନେହ ଲାଭ କରୁଥିଲେ । ବନବିହାରୀ ବାବୁଙ୍କର ଯେତେବେଳେ ବିସୂଚିକାରେ ସହସା ମୃତ୍ୟୁ ହେଲା, ରାଜକିଶୋର ଚତୁର୍ଦ୍ଦିଗ ଅନ୍ଧକାର ଦେଖିଲେ । ପିତୃସ୍ନେହରୁ ବଞ୍ଚିତ ହେବା ସଙ୍ଗେ ସଙ୍ଗେ ବିଦ୍ୟାଧ୍ୟୟନ କରିବାରୁ ଯେ ବଞ୍ଚିତ ହେବାକୁ ହେବ — ସେହି କଥା ଭାବି ସେ ବଡ଼ ବିବ୍ରତ ହୋଇ ପଡ଼ିଲେ । କିନ୍ତୁ କୁମୁଦିନୀ ତାଙ୍କୁ ସେ ବିଷୟରେ ବେଶୀ ଗୁଡ଼ାଏ ଭାବିବାକୁ ଦେଲେ

ନାହିଁ । ସ୍ୱାମୀଙ୍କ ମୃତ୍ୟୁର ଦ୍ୱାଦଶ ଦିନପରେ ସେ ରାଜକିଶୋରଙ୍କୁ ଡାକି କହିଲେ, "ରାଜୁ ! ଯେ ତୋତେ ପଢ଼ାଇଥିଲେ ସେ ତ ଚାଲିଗଲେ । ଘରେ ଗୁଡ଼ିଏ ପିଲା—କିପରି ସେମାନେ ପ୍ରତିପୋଷଣ ହେବେ, ସେଇ ଚିନ୍ତା କରୁ କରୁ ମୋର ଦିନ ସରୁ ନାହିଁ । ସତେ ପ୍ରଭୁ ଦୀନବନ୍ଧୁ ସାହା ହେବେ ?...ତୁ ବାପ, ଏଥର ତୋର ରାସ୍ତା ଦେଖ । କେଉଁଠି ଚାକିରି ବାକିରି ଖଣ୍ଡେ ଯୋଗାଡ଼ କର । ନ ହେଲେ ଦେଖୁଛୁ ତ ଅକାଳ କାଳ ଯେମିତି......।"

ମାଟ୍ରିକୁଲେଶନ କ୍ଲାସରୁ ରାଜକିଶୋରଙ୍କର ପାଠପଢ଼ା ଶେଷ ହେଲା । ସେ ଚାକିରି ଖୋଜିବାକୁ ଲାଗିଲେ । ଦିନେ ଦୈବାତ୍ ତାଙ୍କର ଜଣେ ବନ୍ଧୁଙ୍କଠାରୁ ଶୁଣିଲେ, ଚବିଶପରଗଣାରେ ଜଗନ୍ନାଥ ମଙ୍ଗରାଜ ଜଣେ ବିଷୟବାନ୍ ଲୋକ । ତାଙ୍କର ଜଣେ ଗୁମାସ୍ତା ଦରକାର । ସେ ଆଉ କାଳ ବିଳମ୍ବ ନ କରି ସଙ୍ଗେ ସଙ୍ଗେ ଚବିଶପରଗଣା ଦୌଡ଼ି ଆସିଲେ । ତାହାପରେ କିପରି ମଙ୍ଗରାଜଙ୍କ ଗୃହରେ ସ୍ଥାନ ପାଇଲେ, ସେ କଥା ପାଠକେ ପୂର୍ବରୁ ଅବଗତ ଅଛନ୍ତି ।

ରାଜକିଶୋର ଦେଖିଲେ, ସେ ଯେଉଁଠାକୁ ଯାଉଛନ୍ତି, ଅମଙ୍ଗଳ ଗ୍ରହମାନେ ତାଙ୍କ ପାଖ ଛାଡ଼ୁ ନାହାନ୍ତି । ମାତୁଳାଳୟରେ ମାତୁଳାଣୀଙ୍କର ବ୍ୟବହାରଠାରୁ ଜଗନ୍ନାଥ ମଙ୍ଗରାଜଙ୍କର ବ୍ୟବହାର ବଳିଗଲା । ହେଲେ କିଶୋରୀ ସହିତ କିପରି ଗୋଟାଏ ଅଚ୍ଛେଦ୍ୟ ବନ୍ଧନରେ ବାନ୍ଧି ହୋଇଗଲେ ଯେ, ସେ ଜଗନ୍ନାଥ ମଙ୍ଗରାଜଙ୍କର ଅନାଦର, ଅବହେଳା ଓ ଅଭଦ୍ରୋଚିତ ବ୍ୟବହାର ସମସ୍ତ ଅତି ସହଜରେ ଉପେକ୍ଷା କରିପାରିଲେ । ଭାଗ୍ୟ ମନ୍ଦ ଥିଲେ ଅମ୍ବ ଗଛରେ ମଧ୍ୟ ଅମୃତା ଫଳେ । ଦିନକର ଘଟଣାରେ ରାଜକିଶୋରଙ୍କର ମଙ୍ଗରାଜଙ୍କ ଗୃହରୁ ସବୁ ମାୟା ତୁଟିଗଲା—କିଶୋରୀର ସ୍ନେହବନ୍ଧନ ମଧ୍ୟ ଛିଣ୍ଡିଗଲା ।

ସେ ଦିନ ଦୁଇ ପ୍ରହର ବେଳେ ରାଜକିଶୋରଙ୍କୁ ଜ୍ୱର ହୋଇଥିବାରୁ ସନ୍ଧ୍ୟାରେ ବଡ ଦୁର୍ବଳ ବୋଧ କରୁଥିଲେ । ତଥାପି ସେ ଅନ୍ୟ ଦିନପରି ଯଥାସମୟରେ ରନ୍ଧନ କରିବାକୁ ଆରମ୍ଭ କଲେ । କର୍ତ୍ତବ୍ୟରେ ଅବହେଳା କଲେ ମଙ୍ଗରାଜଙ୍କ ପାଖରେ ଯେ ନିସ୍ତାର ନାହିଁ । ସେ ସବୁ ସହିପାରନ୍ତି—ଦୁଇଟି କଥା ଭିନ୍ନ । କର୍ତ୍ତବ୍ୟରେ ଅବହେଳା, ଆଉ ଅପବ୍ୟୟ, ଏ ଦୁଇଟି ତାଙ୍କ ପାଖରେ ନାହିଁ । ରାଜକିଶୋର ରୁଗ୍ଣ ଶରୀରରେ ଚୂଲି ପାଖରେ ବସି ରୋଷାଇ କରିବେ, ଏ କଥା କିଶୋରୀର ସହ୍ୟ ହେଲା ନାହିଁ । ତାଙ୍କୁ ଅବସର ଦେବା ନିମିତ୍ତ ପିତାଙ୍କର ଅଜ୍ଞାତରେ ସେ ନିଜେ ରନ୍ଧନ କରି ବସିଲା । ଦୁର୍ଭାଗ୍ୟବଶତଃ କୌଣସି କାର୍ଯ୍ୟ ଉପଲକ୍ଷରେ ସିରସ୍ତା ଘରୁ ମଙ୍ଗରାଜେ ଭିତରକୁ ଉଠି ଆସିଲେ । କିଶୋରୀକୁ ଚୂଲି ପାଖରେ ଦେଖି ରାଗରେ ତାଙ୍କର ହାତ କଡ଼ମଡ ହୋଇ ଉଠିଲା । ପିତାଙ୍କର ସହସା ରୁଦ୍ର ମୂର୍ତ୍ତି ଦର୍ଶନ କରି କିଶୋରୀ ପ୍ରମାଦ ଗଣିଲା । ରାଜକିଶୋରଙ୍କୁ ରକ୍ଷା କରିବା ଅଭିପ୍ରାୟରେ କହିଲା, "ଆଜି ଦ୍ୱିପ୍ରହରୁ ରାଜୁନନାଙ୍କୁ ଜ୍ୱର ହୋଇଛି, ତମେ କାମ କରୁଥିଲ ବୋଲି ମୁଁ ଭାତଟା ବସାଇଦେଇଛି ।" ମଙ୍ଗରାଜ ବଡ଼ ଚତୁର । କନ୍ୟାର ଉଦ୍ଦେଶ୍ୟଟା ବୁଝି ପାରିଲେ । କିନ୍ତୁ ରାଜକିଶୋର ବାହୁ ପାଇଲେ ନାହିଁ । ଯାହା ତ ଶୁଣିଲେ ଶୁଣିଲେ, ତାହା ସହିତ ଶୁଣିବାକୁ ପାଇଲେ, "ତୁ ଚୁଲି ଭିକାରୀଟା କେଉଁଠୁ ଆସି କେତେଟା ଦିନ ଭିତରେ ମୋ ସୁନା ଝିଅଟିକୁ ଖରାପ କରିଦେଲୁଣି ? ମୁନିବର ଝିଅକୁ ନିଜର ଦାସୀ ପରି ଖଟାଇବାକୁ ତୋତେ ଟିକିଏ ଭୟ ଲାଗୁ ନାହିଁ ? ମୋ ଝିଅ ରାନ୍ଧିଦେବ—ତୁ ବସି ଖାଇବୁ ? ହଇରେ, ତୋ ବାପ ଦ[illegible]କରେ କେବେ ଏମିତି ସୁଖ କରିଥିଲୁ ? ଅବା ମୋ ଘରୁ ଯା—ତୋର ମୁହଁ ଚାହିଁଲେ ପାପ । ନିମକହାରାମ୍, ହାରାମଜାଦା ।" ଇତ୍ୟାଦି ବହୁତ କଥା ।

"ମୋ ସୁନା ଝିଅଟିକୁ ଖରାପ କରିଦେଲୁଣି ?" ଏହି କଥାଟି ରାଜକିଶୋରଙ୍କୁ ବଡ଼ ବାଧିଲା । ରାଜକିଶୋରଙ୍କ ସଂସର୍ଗରେ ଆସି କିଶୋରୀ ଯଥେଷ୍ଟ ଉନ୍ନତ ପଥରେ ଅଗ୍ରସର ହୋଇଛି । ତାର ଜୀବନର ଗତି ପରିବର୍ତ୍ତିତ ହୋଇଛି । ରାଜକିଶୋରଙ୍କ ଠାରୁ ସେ ଯେଉଁ ସତ୍‌ଶିକ୍ଷା ଲାଭ କରିଛି, ତାହା ମଙ୍ଗରାଜେ ଯେ ଜାଣି ନ ପାରୁଛନ୍ତି ସେପରି ନୁହେଁ; ତଥାପି ଅପବାଦ । ଆଉ ଲବ ମାତ୍ର ସେ ସ୍ଥାନରେ ରହିବାକୁ ରାଜକିଶୋରଙ୍କର ଇଚ୍ଛା ହେଲା ନାହିଁ । ସେ ତାଙ୍କ ଲୁଗା ପଟା ଦୁଇଖଣ୍ଡି ଧରି ସେହି ଅନ୍ଧକାର ରଜନୀରେ ମଙ୍ଗରାଜଙ୍କର ଗୃହ ତ୍ୟାଗ କଲେ । ବିଦାୟ ସମୟରେ କିଶୋରୀକୁ ପଦେ ମାତ୍ର କହିପାରିଲେ ନାହିଁ । ଦୁଃଖରେ ତାଙ୍କର ହୃଦୟ ବିଦୀର୍ଣ୍ଣ ହେବାକୁ ଲାଗିଲା । କିଶୋରୀର ଅବସ୍ଥା ମଧ୍ୟ ତଦ୍ରୂପ । ସେ ଶିଳପ୍ରତିମା ପରି ଛଳଛଳ ଆଖିରେ ଚାହିଁ ରହିଲା କେବଳ ।

---

## —ତୃତୀୟ ପରିଚ୍ଛେଦ—

ରାଜକିଶୋର କୋଡ଼ିଏଟି ଟଙ୍କା ସଞ୍ଚୟ କରିଥିଲେ । ସେହି ଟଙ୍କା କୋଡ଼ିଏଟି ପାଣ୍ଠି ଘେନି ସେ ମଙ୍ଗରାଜଙ୍କ ଗୃହରୁ ଯାଇ ପୁରୀରେ ପହଞ୍ଚିଲେ । ପୁରୀରେ ପହଞ୍ଚିଲେ ସିନା, କର୍ମକ୍ଷେତ୍ରରେ ପହଞ୍ଚିପାରିଲେ ନାହିଁ । ପୁରୀ ଆଗମନ ଏହି ତାଙ୍କ ଜୀବନରେ ନୂତନ । ଅପରିଚିତ ସ୍ଥାନ, କାହା ପାଖକୁ ଯାଇ କିପରି ଭାବରେ ନିଜର ଅଭିଳାଷ ଜଣାଇବେ, ଭାବି ସ୍ଥିର କରିପାରିଲେ ନାହିଁ । ଧର୍ମଶାଳାରେ ରହି ଜଗନ୍ନାଥ-ଦର୍ଶନ ଓ ସମୁଦ୍ରକୂଳଭ୍ରମଣ ଇତ୍ୟାଦିରେ କେତେ ଦିନ କଟିଗଲା । ତା ପରେ ସୁଯୋଗ ପାଇ ଗୋଟିଏ 'ମେସ୍'ରେ ଯାଇ ରହିଲେ ।

ମେସ୍‌ରେ ରହିବା ଦିନରୁ ତାଙ୍କର ଭାଗ୍ୟ-ଦେବତା ପ୍ରସନ୍ନ ହେଲେ । ଜଣେ ନୂତନ ବନ୍ଧୁଙ୍କ ସାହାଯ୍ୟରେ ପୁରୀର କଲେକ୍ଟର୍ ସାହେବ ବୈକୁଣ୍ଠନାଥ ଦାସଙ୍କ ପୁତ୍ରର ଗୃହ ଶିକ୍ଷକ ଚାକିରିଟିଏ ପାଇଲେ । ଦିନଭିତରେ ଥରେ ପଢ଼ାଇବାକୁ ହେବ । ସେ ପୁଣି ସନ୍ଧ୍ୟା ଛ'ଟାରୁ ରାତି ନ'ଟା ପର୍ଯ୍ୟନ୍ତ । ଦରମା ପନ୍ଦର ଟଙ୍କା । ରାଜକିଶୋରଙ୍କର ଅନ୍ତର ଆନନ୍ଦରେ ନାଚି ଉଠିଲା । ଦିନରେ ଅଉ କୌଣସିଠାରେ 'ଟିଉସନ୍' ଯୋଗାଡ କରିପାରିଲେ ଆଉ ପାଞ୍ଚ ଦଶ ଟଙ୍କା ମଧ୍ୟ ମିଳିବାର ଆଶା । ସେ ମଙ୍ଗରାଜଙ୍କର ସମସ୍ତ ଅତ୍ୟାଚାରର ଲାଞ୍ଛନା ଭୁଲି ନୂତନ ଉତ୍ସାହରେ ନୂତନ ଆନନ୍ଦରେ ନୂତନ ବନ୍ଧୁମେଳରେ ନିଜର କର୍ତ୍ତବ୍ୟରେ ଲାଗି ପଡ଼ିଲେ ।

ଓଡ଼ିଶାର ପ୍ରସିଦ୍ଧ ଚୋର ବିହାରୀ ନାୟକର ନାମ କିଏ ନ ଶୁଣିଛି ? ରାଜା, ଜମିଦାର ଓ ଶ୍ରେଷ୍ଠୀ କର୍ମଚାରୀ ହୋଇ ତାର ଦୌରାତ୍ମ୍ୟରୁ କିଏ ରକ୍ଷା ପାଇଛି ? ତିନିମାସ କାଳ ପୁଲିସ ଗୋଇନ୍ଦାକୁ ଠକି ଠକି ବହୁ କଷ୍ଟରେ ସେ ଧରା ପଡ଼ିଛି ଆଠଦିନ ହେବ ।

ସେ ଦିନ ବିହାରୀର ମୋକଦ୍ଦମା ବିଚାର ତାରିଖ । ପୁରୀ କଲେକ୍ଟରୀ କଚେରୀ ହତା ଜନତାରେ ପୂର୍ଣ୍ଣ । ସହର ଛଡ଼ା ମଫସଲରୁ ମଧ୍ୟ ଅସଂଖ୍ୟ ଲୋକ ଆସି ଜୁଟି ହୋଇଛନ୍ତି କେବଳ ବିହାରୀ ନାୟକକୁ ଦେଖିବା ଉଦ୍ଦେଶ୍ୟରେ । ରାଜକିଶୋରଙ୍କର ଦିନରେ ତ କିଛି କାମ ନାହିଁ । ତାଙ୍କର ବନ୍ଧୁମାନେ ସମସ୍ତେ ସ୍କୁଲ ଛାତ୍ର । ସେମାନେ ଦଶଟାରେ ସ୍କୁଲକୁ ଚାଲିଗଲେ ରାଜକିଶୋର ଏକୁଟିଆ ବସାରେ ପଡ଼ିରହନ୍ତି । ସେ ଦିନ ବିହାରୀ ନାୟକର ମୋକଦ୍ଦମା ବିଚାର ହେଉଥିବାର ଶୁଣି ତାଙ୍କର ମଧ୍ୟ କୌତୂହଳ ଜାତ ହେଲା । ସେ ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ ନ କରି କଚେରୀକୁ ଚାଲିଗଲେ ।

ସେତେବେଳକୁ ବଡ଼ୁର ଆରମ୍ଭ ହୋଇଗଲାଣି । ବହାଗ୍ର ହାତକଣ୍ଠ ପିନ୍ଧି କାଠଗଡ଼ାରେ ଠିଆ ହୋଇଛୁ ବୀର ଦର୍ପରେ । ଲଜ୍ଜା ନାହିଁ, ସଙ୍କୋଚ ନାହିଁ—ଭୟ ଭ୍ରାନ୍ତ କିଛି ନାହିଁ । ପୁଲିସ ଅଫ ଫେଟେ ସାକ୍ଷୀ ମଧ୍ୟ ମିସଲ ପାଖରେ ଛିଡ଼ା ହୋଇଛନ୍ତି । ଦର୍ଶକ-ମାନଙ୍କର କୌତୁହଳ-ପ୍ରଦୀପ୍ତ ଚକ୍ଷୁ ବହାଗ୍ରର ଉନ୍ନତ ଶରୀର ଉପରେ କେନ୍ଦ୍ରୀଭୂତ । ବହାଗ୍ର ସହଜ କଣ୍ଠରେ କହିଲା, "ଆଚ୍ଛା, ଜମାଦାର-ବାବୁ ! ଆପଣ ଯେଉଁ ପ୍ରକାର ଅଲଙ୍କାରଟି ମୋ ପକେଟରୁ ପାଇଲେ ବୋଲି କହୁଛନ୍ତି, ଆପଣ ସେ ଅଲଙ୍କାରଟିକୁ ଭଲ ଭାବରେ ଦେଖି-ଛନ୍ତି ? ଆପଣ ତ ହିନ୍ଦୁ । ହିନ୍ଦୁ ପକ୍ଷରେ ମିଛ କହିବା ମହାପାପ । ସତ କହନ୍ତୁ ।" ଜମାଦାର ବିପିନବିହାରୀ ପାଲ—ବେଶ୍ ବଙ୍ଗାଳି; ସେ ଗୁରୁ ଗମ୍ଭୀର ସ୍ୱରରେ କହିଲେ, "ହଁ, ମୁଁ ଭଲରୂପେ ଦେଖିଛି ।"

"ଅଚ୍ଛା, ତାର ନାଁ କଣ କହିପାରିବେ କି ?"

"ବଙ୍ଗଳାରେ କହନ୍ତି ସିନ୍ଥି—ଓଡ଼ିଆରେ କହନ୍ତି ଅଲକା ।"

"ବେଶ୍, ସେ ଅଲଙ୍କାରଟି କେଉଁଠି ପିନ୍ଧନ୍ତି କହିପାରିବେ ?"

"ସ୍ତ୍ରୀଲୋକମାନେ ମୁଣ୍ଡରେ ପିନ୍ଧନ୍ତି ।"

"ହାଃ ହାଃ"—ଉଚ୍ଚ ହାସ୍ୟରେ ବହାଗ୍ର ଜନତାକୁ ଚମକାଇ ଦେଇ ଦଫାଦାର ବାଳରବନ୍ଧୁଙ୍କୁ ଲକ୍ଷ୍ୟକରି କହିଲା, "ଦଫାଦାର ବାବୁ ! ଆପଣ ତ ସରକାର ଅଧୀନରେ ଗୁଳ୍କରୀ କରି କରି ମୁଣ୍ଡରେ ବାଳ ପଚେଇଲେଣି । ଆପଣଙ୍କ ଜମାଦାର ବାବୁଙ୍କ ବୁଦ୍ଧିବିଦ୍ୟା ତ ଜଣା ପଡ଼ିଗଲା । ଆପଣ ଏବେ ସତ କହନ୍ତୁ ଦେଖି, ସେ ଅଲଙ୍କାରଟି ଆପଣ ଦେଖିଛନ୍ତି ?" ଦଫାଦାର ବାବୁ ଗଳାଟି ପରିଷ୍କାର କରିଦେଇ କହିଲେ, "ଏ କି କଥା ! ମୁଁ ନିଜେ ସେ ଅଲଙ୍କାର ତମ ପକେଟରୁ ବାହାର କଲି—ଦେଖିଲି ନାହିଁ କିପରି ?"

"ତେବେ କହନ୍ତୁ ସେ ଅଳଙ୍କାର କେଉଁଠି ପିନ୍ଧନ୍ତି ?"

ଦଫାଦାର ଟିକିଏ ଚିନ୍ତିତ ହୋଇ ପଡ଼ିଲେ । ବିହାରୀର ନିର୍ଭୀକ ପ୍ରଶ୍ନ ଓ 'ଜମାଦାରଙ୍କ ବୁଦ୍ଧିବିଦ୍ୟା ତ ଜଣା ପଡ଼ିଗଲା' ଏହି କଥାଟି ଦଫାଦାରଙ୍କୁ ବଡ଼ ମୁସ୍କିଲରେ ପକାଇଦେଲା । ସେ ଭାବିଲେ—ଜମାଦାର ବାବୁ ବୋଧହୁଏ ଭୁଲ୍ କହୁଛନ୍ତି—ତା ନ ହେଲେ ବିହାରୀ ଏପରି ତାହାଙ୍କୁ କହନ୍ତା ?

ଦଫାଦାରଙ୍କର ବିଳମ୍ବ ଦେଖି ବିହାରୀ ତାଚ୍ଛଲ୍ୟ ହସଟାଏ ହସି କହିଲା, "କି ଦଫାଦାର ବାବୁ, ଚୁପ୍ ରହିଲେ ଯେ !" ଦଫାଦାର ବାବୁ ଦେଖିଲେ—ମହା ବିପଦ । ଚାକିରି ଖଣ୍ଡି ଯେ ଏଣେ ଯିବା ଉପରେ । ଆଉ କିଛି ଭାବିବାର ଅବସର ପାଇଲେ ନାହିଁ । କହିଲେ, "ଅଣ୍ଟାରେ ପିନ୍ଧନ୍ତି ସେ ଅଳଙ୍କାର ।" ଦର୍ଶକ, ସାକ୍ଷୀ ସମସ୍ତଙ୍କର ମୁଖ ବିକୃତ ହୋଇଗଲା । ବିହାରୀ ଜମାଦାରଙ୍କୁ ଲକ୍ଷ୍ୟ କରି କହିଲା, "ଜମାଦାର ବାବୁ ବିରକ୍ତ ହେଲେ ବୋଧହୁଏ—ଜଗନ୍ନାଥଙ୍କ ସ୍ଥାନରେ ବୁଢ଼ା ହୋଇ ଦଫାଦାର ବାବୁ ମିଛ କହନ୍ତେ କିପରି ?" ତାପରେ ହାକିମଙ୍କୁ ଚାହିଁ କହିଲେ, "ହଜୁର ! ମୋର ଆଉ କିଛି ପଚାରିବାର ନାହିଁ ।" ହାକିମ ଜନାନ୍ତିକେ ଟିକିଏ ମୁରୁକି ମୁରୁକି ହସିଲେ । ତାପରେ ରାୟ ଲେଖିବାକୁ ଆରମ୍ଭ କଲେ । ଜନତା ମଧ୍ୟ ନ ହସି ରହିପାରିଲା ନାହିଁ । ସମସ୍ତେ ଏକମୁଖରେ ଦଫାଦାରଙ୍କର ବୁଦ୍ଧିକୁ ନିନ୍ଦା କରିବାକୁ ଲାଗିଲେ ।

ବିହାରୀ ତ ଗୋଟିଏ କେଶ୍‌ରେ ଗିରଫ୍ ହୋଇ ନାହିଁ, ତିନୋଟା କେଶ୍ ତା ଉପରେ । ହାକିମ ଲେଖା ଶେଷ କରି ଆଉ ଗୋଟାଏ କେଶ୍‌ର ବିଚାର ଆରମ୍ଭ କଲେ । ପୁଣିଥର ନାମଜାଦା ବାଇ ଚନୀକୁ ଡକାହେଲା । ତାକୁ ପଚାରିବାରେ ସେ କହିଲା, "ହଜୁର ! ମୋର

ଘର ଭୂତଙ୍ଗ ସାହିରେ । ଏ ବହାସ୍ତ ନାୟକ ଛଅ ମାସ ତଳେ ମୋ
ଘରେ ଯାଇ ରହିଲା । ମୋତେ ପ୍ରଥମେ ପାଞ୍ଚଶ ଟଙ୍କା, ଆଉ ପ୍ରାୟ
ଟଙ୍କା ସାତଶ ଆଠଶର ଅଳଙ୍କାର ଦେଇ କହିଲା, 'ମୁଁ ବରାବର ତୁମ
ପାଖରେ ରହିବି । ଏ ସବୁ ନିଅ ରଖ ।' ଟଙ୍କା, ଅଳଙ୍କାର ଦେଖି,
ଆଉ ତାର ମିଠା କଥା ଶୁଣି ମୁଁ ଭୁଲିଗଲି । ଯଦି ସେତେବେଳେ
ଜାଣିଥାନ୍ତି ଏ ଏମିତି ଦଗାବାଜ ଦ୍ୱାଗ୍ରେର ବୋଲି ଅଜ୍ଞା, ସାଙ୍ଗେ
ସାଙ୍ଗେ ପୋଲିସରେ ଖବର ଦେଇଥାନ୍ତି ପରା । ଏ ନିମକହାରାମ
ଯେମିତି ଆଠ ଦଶ ଦିନ ରହିଗଲା, ମୋର ସ୍ତ୍ରୀ ଉପରେ ଖୁବ୍ ବିଶ୍ୱାସ
ହୋଇଗଲା । ମୋର ସିନ୍ଦୁକର ଚାବି ଗୁଛା ତା ହାତକୁ ବଢ଼ାଇଦେଲି ।
ଦିନେ ସଞ୍ଜବେଳେ ମୁଁ ପୋଖରୀ ଯାଇଛି, ଏ ନିମକହାରାମ ତାର
ପାଞ୍ଚଶ ଟଙ୍କା ଆଉ ଯେଉଁସବୁ ଅଳଙ୍କାର ମୋତେ ଦେଇଥିଲା ସେତକ,
ଆଉ ମୋର ୨୦୦ ଟଙ୍କା, ୫୦୦ ଟଙ୍କାର ଅଳଙ୍କାର ନେଇ କେଉଁ-
ଆଡ଼େ ଚମ୍ପଟ୍ କଲା । ତା ପରେ ମୁଁ ଅସି ଥାନାରେ ଏତଲା କଲି ।
ପୋଲିସ ଏନକ୍ୱାରି ହେଲା । କିଛି ପତ୍ତା ମିଳିଲା ନାହିଁ । ଛଅ ମାସ
ପରେ ଏବେ ଧରା ପଡ଼ିଛି । ହଜୁର ଯାହା ବିଚାର କରିବେ ।"
ଯଥାବିଧି ମୋକଦ୍ଦମା ବିଚାର ଚାଲିଲା । ଶେଷରେ ହାକିମ ବହାସ୍ତକୁ
କହିଲେ, "ତମର କିଛି ପଚାରିବାର ଥିଲେ ପଚାରିପାର ।" ବହାସ୍ତ
ଚନୀକୁ ଲକ୍ଷ୍ୟ କରି କହିଲା, "ଛଅ ମାସ ତଳେ ମୁଁ ତୋର ଘରେ
ଥିଲି, ଆଉ ଟଙ୍କା, ଅଳଙ୍କାର ନେଇ ଯାଇଛି—ତୁ ସତ କହୁଛୁ ?"
ଚନୀ ରାଗରେ ନାଲି ପଡ଼ିଗଲାଣି ସେତେବେଳକୁ । ସେ ଖଦର-
ନାଗବଲ୍ଲୀଜନିତ ରାଗରଞ୍ଜୀ ଜବାଧରକୁ ଥରାଇ ଥରାଇ କହିଲା, "ସତ
କହୁ ନାହିଁ କଣ ମିଛ କହୁଛି ?"

"ଅଚ୍ଛା, ମୋତେ ଚିହ୍ନିଛୁ ଭଲକରି ? ଛଅମାସ ତଳେ ମୁଁ
ତୋର ଘରେ ଥିଲି ସତ କହୁଛୁ ତ ?" "ଭଲକରି ଚିହ୍ନିଛି—ଅଚ୍ଛା

ଦିଏ ଚାହିଁଛି । ତୁ ଦେଖିଲୁ ମୋ ଘରେ ଭଦ୍ରଲୋକ ପରି ଯାଇ ରହିଲୁ ।
ଶେଷରେ ମୋର ବେକରେ ଛୁରୀ ଦେଲୁ ବିଶ୍ୱାସଘାତକ ।"

"ଅଚ୍ଛା, ଗୋଟିଏ କଥା ପଚାରିବି, ସତ କହିବୁ ଏକା । କହିଲୁ ଯଅରଦିନ ରାତି ୯ଟା ବେଳେ କିଏ ତୋ ଘରକୁ ଯାଇଥିଲା ?"

ଚମ୍ପା ଟିକିଏ ଚିନ୍ତାକଲା । କହିଲା, 'କହିପାରିବି ନାହିଁ ।'

'କାହିଁକି ?'

"ମୋର ମନେ ପଡ଼ୁ ନାହିଁ ।"

'ଅଚ୍ଛା,ସେ ଦିନ ସକାଳଓଳିକି ତରକାରୀ ହୋଇଥିଲା ତୋର ?'

"ମଲା,ତିନିଦିନ କଥା ମନେ ଅଛି ନା ମୋର ! କିଏ ଆସିଥିଲା, କଣ ତରକାରୀ ହୋଇଥିଲା, ମୁଁ କଣ ଲେଖି ରଖିଥିଲି ?"

"ନା, ତା କିପରି ହେବ ! ଏ ସବୁ କଥା କଣ କିଏ ଲେଖି-ରଖେ ? ଦାସୀ ଘର ତ, କେତେ କିଏ ଆସୁଛି, ଯାଉଛି । ଅଚ୍ଛା, ବାଇଇ । ତିନିଦିନର ଘଟଣା ଯାର ମନେ ରହେ ନା, ତିନି ମାସର କଥା କିପରି ମନରେ ରହିଲା ? ତିନି ମାସ ତଳେ ମୁଁ ତୋର ଘରେ ରହିଥିଲି, କିପରି ମନରେ ରଖିଲୁ ? ଜମାଦାର ବାବୁ ତୋତେ ଶିଖାଇ ଦେଇ ନାହାନ୍ତି ତ ?"

ଚମ୍ପା କେତେ ଆଶା କରିଥିଲା ତା'ର ଅପହୃତ ସଂପତ୍ତି ଫେରି ପାଇବ ବୋଲି ; କିନ୍ତୁ ବିହାରୀ ଜେରାରେ ମୋକଦ୍ଦମାକୁ ଯେତେ-ବେଳେ ଅପ୍ରମାଣ କରିଦେଲା, ତାର ଜ୍ଞାନ ହଜିଗଲା । ହୃତ ଧନ ଆଉ ଫେରି ପାଇବ ନାହିଁ—ଏହି ଆଶଙ୍କାରେ ତାର ଚୈତନ୍ୟଲୋପ ହୋଇଗଲା । ସେ ଶବ୍ଦହତ ହରିଣୀ ପରି ସେହିଠାରେ ଢଳି ପଡ଼ିଲା । ଉକ୍ତ ଘଟଣା ଦର୍ଶନରେ ରାଜକିଶୋରଙ୍କ ଧମନୀରେ ରକ୍ତସବୁ ଗରମ ହୋଇ ଉଠିଲା । ସେ ବିହାରୀ ଉପରେ ଭୟଙ୍କର ଚଟି ଉଠିଲେ ।

ଏହି ବିଦ୍ୟାସାଗର ଶ୍ରେଷ୍ଠତା । ଏହାର ପୁଣି କି ଅସୀମ ସାହସ ! କି ଧୃଷ୍ଟ ବୁଦ୍ଧି ! ପ୍ରକୃତରେ ଦୋଷ କରି ସୁଦ୍ଧା ଲବ ମାତ୍ର ଭୟ ନାହିଁ । କୌଶଳରେ ଅନ୍ୟର ମସ୍ତିଷ୍କକୁ ବିକୃତ କରି ଦେଉଛନ୍ତି ! ରାଜକିଶୋର ଦନ୍ତରେ ଦନ୍ତ ଘର୍ଷଣ କରିବାକୁ ଲାଗିଲେ । ସେ ପୁଲିଶ ବିଭାଗରେ କାର୍ଯ୍ୟ କରୁଥାନ୍ତେ କି !

× × × ×

ସେ ଦିନ ରାତିରେ ରାଜକିଶୋରଙ୍କର ସୁନିଦ୍ରା ହେଲା ନାହିଁ । ବିଦ୍ୟାସାଗର କଥା ମନରେ ପଡ଼ି ତାଙ୍କର ହୃଦୟ ବ୍ୟଥିତ ହେବାକୁ ଲାଗିଲା । ସେ ଭାବିଲେ—କି ଉପାୟରେ ବିଦ୍ୟାସାଗରଙ୍କୁ ଜବତ କରାଯାଇପାରେ । କେତେ ଶତ ନିରୀହ ଲୋକମାନେ ଯେ ତା ଯୋଗୁଁ ସର୍ବସ୍ୱାନ୍ତ ହୋଇ-ଛନ୍ତି ଓ ହେଉଛନ୍ତି, ତାର ଇୟତ୍ତା ନାହିଁ ।

ରାଜକିଶୋର ବହୁତ ଭାବିଲେ ସେ ବିଷୟରେ ; କିନ୍ତୁ ବଳହୀନ ସେ—ତାଙ୍କଦ୍ୱାରା ବା କଣ ହୋଇପାରେ ? ଶେଷରେ ସ୍ଥିର କଲେ, ଦିନରେ ଯେଉଁ ସମୟତକ ସେ ଅବସର ପାଉଛନ୍ତି, ସେହି ସମୟରେ ଅନ୍ୟତ୍ର ଟିଉସନ ଯୋଗାଡ଼ ନ କରି ନିଜେ ପଢ଼ିବେ । ବାହାର ଛାତ୍ରରୂପେ ମାଟ୍ରିକ୍ୟୁଲେଶନ ପରୀକ୍ଷାଟା ଦେବେ । ତାପରେ ଚେଷ୍ଟା କରିବେ ପୋଲିଶ ବିଭାଗରେ ପଶିବାକୁ । ତଦ୍ଦ୍ୱାରା ଯଦି ସେ ଲୋକ-ସାଧାରଣଙ୍କର କିଛି ଉପକାର କରିପାରନ୍ତି ।

## —ଚତୁର୍ଥ ପରିଚ୍ଛେଦ—

ରାଜକିଶୋର ନିଜ ଅଧ୍ୟବସାୟ ବଳରେ ଯଥାସମୟରେ ବାହାର ଛାତ୍ରରୂପେ ମାଟ୍ରିକ୍ୟୁଲେଶନ ପରୀକ୍ଷା ଦେଇ ଫଳ ବାହାରିବାକୁ ଅନାଇ ରହିଲେ । କଲେକ୍ଟର ବୈକୁଣ୍ଠବାବୁଙ୍କ ଘରେ ଟିଉସନ୍ଟି

ପୂର୍ବବତ୍ ଥାଏ । ସେ ପ୍ରତ୍ୟହ ସନ୍ଧ୍ୟା ଛଅଟାରେ ଅଫିସକୁ ଯାʼନ୍ତି । ତା ପୂର୍ବରୁ ଘଣ୍ଟାଟିଏ ସାନ୍ଧ୍ୟ ଭ୍ରମଣ କରିବା ତାଙ୍କର ଅଭ୍ୟାସ । ନିତାନ୍ତ ଅସୁବିଧା ନ ହେଲେ ସେ ଅଭ୍ୟାସର କୌଣସି ଦିନ ବ୍ୟତିକ୍ରମ ହୋଇଥିବାର ଦେଖା ନାହିଁ । ଅଧିକାଂଶ ଦିନ ପ୍ରାୟ ତାଙ୍କର ସ୍ଥିର ମୁରଲୀଧରଙ୍କୁ ସଙ୍ଗରେ ନେଇଯାʼନ୍ତି । ମୁରଲୀଧର ବଡ଼ ପ୍ରକୃତି-ପ୍ରିୟ । ସେ 'ସାର୍'ଙ୍କ ସଙ୍ଗରେ ସମୁଦ୍ରକୂଳରେ ବୁଲିବାକୁ ବଡ ଭଲ ପାଏ । ପ୍ରକୃତିର ନିତ୍ୟ ନୂତନ ବେଶ—ବଙ୍ଗୋପସାଗରର ରୁଦ୍ରସୁନ୍ଦର କଳେବର ଦେଖି ସେ ତନ୍ମୟ ହୋଇ ଉଠେ । ରାଜକିଶୋର ମଧ୍ୟ ଶିଶୁଟି ପରି ସ୍ଥିର ସଙ୍ଗରେ ପ୍ରକୃତିସୌନ୍ଦର୍ଯ୍ୟରେ ବିଭୋର ହୋଇ ବେଳାଭୂମିରେ ସମୁଦ୍ର କଙ୍କଡ଼ାକୁ ଗୋଡ଼ାଇବା, ଲହରୀ ସଙ୍ଗରେ ଦୌଡ଼ା ଦୌଡ଼ି ଖେଳିବା ଇତ୍ୟାଦିକୁ ଖୁବ୍ ଭଲ ପାʼନ୍ତି ।

ସେ ଦିନ ରାଜକିଶୋର ଯେତେବେଳେ ମୁରଲୀଧରଙ୍କୁ ଡ଼ାକିଲେ ବୁଲିଯିବା ପାଇଁ, ଆଜି ଗୋଟିଏ ନବୀନ ସାଥୀ ତାଙ୍କ ସଙ୍ଗରେ ବୁଲି ବାହାରିଲା । ସେ ବୈକୁଣ୍ଠବାବୁଙ୍କ ଭାଇ ବିପିନବାବୁଙ୍କର ଝିଅ ବିଦ୍ୟୁଲ୍ଲତା । ବିପିନବାବୁ ବାଲେଶ୍ୱର ସବ୍‌ଡିଭିଜନର ଏସ୍. ଡି. ଓ. । କେତେ ମାସ ହେବ ମେଲେରିଆରେ ଭୋଗି ଭୋଗି ବଡ ରୁଗ୍ଣ ହୋଇ-ଯିବାରୁ ଦୁଇମାସ ଛୁଟି ନେଇ ସେ ପୁରୀକୁ ପରିବର୍ତ୍ତନରେ ଆସିଛନ୍ତି । ତାଙ୍କର ପରିବାର ମଧ୍ୟରେ—ସେ, ତାଙ୍କର ସ୍ତ୍ରୀ ଓ ଚତୁର୍ଦ୍ଦଶବର୍ଷୀୟା ଏକମାତ୍ର କନ୍ୟା 'ବିଦୁ' ।

ରାଜକିଶୋର ମୁରଲୀ ଓ ବିଦୁକୁ ନେଇ ସମୁଦ୍ରକୂଳକୁ ବାହାରିଲେ । ସମୁଦ୍ର କୂଳ ଭ୍ରମଣ ବିଦୁ ପକ୍ଷରେ ନୂତନ । ତାକୁ ବଡ ରମଣୀୟ, ବଡ ତୃପ୍ତିପ୍ରଦ ବୋଧ ହେଲା । ଉଦିତର ଫରଫର ଫୁଲାପଡ଼ିଟି ପରି ସେ ସିକତାମୟ ବେଳାରେ ଡେଇଁ ଡେଇଁ ବୁଲିବାକୁ

ଲଗିଲା । ପାରିବାରିକ ଜଡ଼ୁଙ୍ଗ ସୌନ୍ଦର୍ଯ୍ୟରେ ସେ ତନ୍ମୟ—ବାଲୁକା
ବେଳାଭୂମିରେ ଅସଂଖ୍ୟ ନର ନାରୀ ବିଚରଣ କରୁଛନ୍ତି । ତାପରି
କେତେ ନବ ଯୁବତୀ, ରାଜକିଶୋରଙ୍କ ପରି କେତେ ନବ ଯୁବକ,
ମୁରଲୀ ପରି କେତେ ବାଳକ ଓ କେତେ ବୃଦ୍ଧ, ପ୍ରୌଢ଼ ବିଚରଣ
କରୁଛନ୍ତି । କିନ୍ତୁ ତାର କାହାରି ପ୍ରତି ନଜର ନାହିଁ—ଭ୍ରୂକ୍ଷେପ ମଧ୍ୟ
ନାହିଁ । ସେ ଯେପରି ସଂସାରରୁ ବହୁ ଦୂରରେ—ଜନନେତ୍ରର
ଅନ୍ତରାଳରେ ଜଡ଼ୁଙ୍ଗ ପକ୍ଷୀଟିଏ । ତାର ମନକୁ ସେ କେତେ ଗୀତ
ଗାଇ ଯାଉଛି—କେତେ ଭଙ୍ଗୀରେ ନାଚି ଯାଉଛି । ଲହରୀ ବାରିଧିର
ମୃଦୁ-ମନ୍ଦ ଗର୍ଜନ ତାର ଅନ୍ତରରେ କି ଏକ ଅଭିନବ ରାଗିଣୀର
ସୃଷ୍ଟି କରୁଛି । କେତେବେଳେ ଯେ କି ସଙ୍ଗୀତ ଗାଇ ଯାଉଛି ସେ,
ନିଜେ ମଧ୍ୟ ବୁଝି ପାରୁ ନାହିଁ । ବିନୁର ଏହାବିଧ ଆଚରଣ ଦେଖି
ରାଜକିଶୋର ବଡ଼ ବିସ୍ମିତ ହୋଇ ଉଠିଲେ । ତାଙ୍କ ପକ୍ଷରେ ବିନୁ-
ପରି ନବ ତରୁଣୀର ସହଭ୍ରମଣ ଏ ମଧ୍ୟ ନୂତନ । ସେ ପ୍ରଥମେ କିଛି
ବୁଝି ପାରିଲେ ନାହିଁ ତାର ବାଳିକାସୁଲଭ ଚପଳତା ଦେଖି । ସେ
ବୁଝି ନ ପାରିଲେହେଁ ତାଙ୍କ ଅଲକ୍ଷ୍ୟରେ ତାଙ୍କର ଅନ୍ତରାତ୍ମା ବୁଝି
ପାରିଲେ । ବିନୁ ଯାହାର ପ୍ରେରଣାରେ ପ୍ରକୃତି-ସୌନ୍ଦର୍ଯ୍ୟରେ ମୁଗ୍ଧ
ତନ୍ମୟ, ରାଜକିଶୋର ସେହି ପ୍ରେରଣାରେ ବିନୁର ଚପଳ ତରଙ୍ଗିତ
ଛବି ଦେଖି ମୁଗ୍ଧ ତନ୍ମୟ ହୋଇପଡ଼ିଲେ । ବିନୁର ଶରତ୍ ଜ୍ୟୋତ୍ସ୍ନା-
ନନ୍ଦୀ ଢଳଢଳ ବଦନ-ସୁଷମା ତାଙ୍କର ଯୁବକ ପ୍ରାଣରେ ମଧୁମାସର
ଉନ୍ମାଦନା ଆଣି ଦେଲା । ସେ ମଧ୍ୟ ଜଗତକୁ ଭୁଲି କମଳ-
ଗର୍ଭଗତ ଅଳି ପରି ବିନୁ-ହୃଦୟଗତ ହୋଇପଡ଼ିଲେ ।

"ମାଷ୍ଟ୍ରବାବୁ, ସବୁବେଳେ କଣ ଏହିପରି ଲହରି ଉଠୁଥାଏ ?
ସମୁଦ୍ରର ଓପାରି କେତେ ? ଏ ଚଢ଼େଇଟା ନାଁ କଣ ? ଏ କଙ୍କଡ଼ାକୁ
ଖାନ୍ତି ? ନୋଳିଆମାନେ ଏତେ ବାଟ ମାଛ ଧରିବାକୁ ଯାଉଛନ୍ତି,

ଲୟସ୍ଥରେ ତାଙ୍କର ଭଙ୍ଗା ବୁଝି ଯାଉ ନାହିଁ ?" ଇତ୍ୟାଦି ପ୍ରଶ୍ନରେ ରାଜକିଶୋର ଅନ୍ତର ଉଦ୍‌ବ୍ୟସ୍ତ ହୋଇପଡ଼ିଲେ ।

ସାନ୍ଧ୍ୟ ଭ୍ରମଣ ସାଙ୍ଗ ହେଲା·····ରାଜକିଶୋର ମୃଣାଲକୁ ପଢ଼ାଇ ସାରି ନିଜର ବସାକୁ ଗଲେ । କିନ୍ତୁ ଅନ୍ୟ ଦିନ ପରି ସେ ଦିନ ସେ ଶାନ୍ତିରେ ଗଣ୍ଡିଏ ଖାଇପାରିଲେ ନାହିଁ କି ସୁଖରେ ନିଦ୍ରା ଯାଇ ପାରିଲେ ନାହିଁ । ତାଙ୍କ ପ୍ରାଣରେ ଗୋଟାଏ ମସ୍ତ ପରିବର୍ତ୍ତନ ସଙ୍ଘଟିତ ହୋଇଗଲା । ତାଙ୍କୁ ଯେପରି ସବୁ ଖାଲି, ନୀରସ ବୋଧ ହେଲା । ଯେପରି କେହିଁଟି ସେ କଣ ଗୁଡ଼ ଅସିଛନ୍ତି—ମହାମୂଲ୍ୟ ବସ୍ତୁଟିଏ ହରାଇ ଦେଇଛନ୍ତି । ମନଟା ଚଞ୍ଚଳ ହେବାକୁ ଲାଗିଲା । ସେ ବହୁତ ଭାବିଲେ; କାରଣ ସ୍ଥିର କରିପାରିଲେ ନାହିଁ ।

ରାଜକିଶୋର ଶୋଇବାକୁ ବହୁତ ଚେଷ୍ଟା କଲେ ; ମାତ୍ର ନିଦ୍ରା ଅସିଲା ନାହିଁ । ବିଦ୍ୟୁତ-କାନ୍ତିମତୀ ବିଦୁର ରମଣୀୟ ମୂର୍ତ୍ତିଟି ତାଙ୍କର ଅଖି ଆଗରେ ଭାସି ଉଠିଲା । ବିଦୁ ସତେ କେଡ଼େ ସରଳ, ନିତାନ୍ତ ଅଜ୍ଞ ଶିଶୁଟି ପରି ! ସଂସାର ବିଷୟରେ ତା'ର ଆଦୌ ଜ୍ଞାନ ନାହିଁ । ସେ ଫୁଟା ଫୁଲଟି ପରି ନିଜ ସୌନ୍ଦର୍ଯ୍ୟର ସୌରଭରେ ବିଭୋର । ରାଜକିଶୋରଙ୍କର ଭାବନା କ୍ରମେ ଦୂରକୁ ଗଡ଼ିଲା । ଫୁଟା ଫୁଲ କଥା ଭାବୁ ଭାବୁ ଅଜ ଗୋଟିଏ ସ୍ଫୁଟନୋନ୍ମୁଖ କୋରକ ତାଙ୍କର ଦୃଷ୍ଟିପଥାରୁଢ଼ ହେଲା । ସେ କୋରକଟିକୁ ବହୁ ଦିନ ହେଲା ପାସୋରି ପକାଇଛନ୍ତି । ସେ ବର୍ତ୍ତମାନ ପ୍ରସ୍ଫୁଟିତ ହୋଇ ତାର ସୌନ୍ଦର୍ଯ୍ୟ-ପସରା ମେଲିଦେବଣି ପରା ! କିଶୋରୀର ସରମ-ବୋଳା ଅଯତ୍ନ ନେତ୍ରର କି ମଧୁର ଗୁହାଣୀ !

ରାଜକିଶୋର ଏତେ ଦିନ ଯାଏ ଗ୍ଲାନ ଥିଲେ । "ମାଟ୍ରିକୁ୍ୟଲେଶନ ପରୀକ୍ଷା ଦେବେ" ଏହି ବଳବତୀ ଇଚ୍ଛା ତାଙ୍କୁ ଏତେ ଦିନ ଯାଏ

ଯୁସ୍ତ୍ରକରେ ମଜାଇ ରଖିଥିଲା । ସେ ବିଦୁପରି ନବ ଯୁବତୀର ସହ ଭ୍ରମଣ
କେବେ ନ କରିଥିଲେହେଁ ବିଦୁଠାରୁ ବଳି ବହୁତ ରୂପସୀ ତାଙ୍କର
ଦୃଷ୍ଟିପଥାରୂଢ଼ ହୋଇଛନ୍ତି । ସାୟଂଭ୍ରମଣ ସମୟରେ ସେ କେତେ
କେତେ ସୁନ୍ଦରୀ ଷୋଡ଼ଶୀଙ୍କୁ ଦେଖିଛନ୍ତି ; ମାତ୍ର ସେମାନଙ୍କ ବିଷୟରେ
ଲବମାତ୍ର ଭାବିବାକୁ ଅବସର ପାଇ ନ ଥିଲେ । ଆଜି ସେ ତାଙ୍କର
କର୍ତ୍ତବ୍ୟ ସଂପାଦନ କରି ସାରିଛନ୍ତି । ଇଚ୍ଛା ଶକ୍ତି ତାଙ୍କର
ଗୋଟିଏ ସ୍ଥାନରେ ନିବଦ୍ଧ ନ ହୋଇ ଉନ୍ମୁକ୍ତ ପକ୍ଷୀ ପରି ଚତୁର୍ଦ୍ଦିଗରେ
ବିଚରଣ କରୁଛି । ସେଥିପାଇଁ ସେ ବିଦୁର ସୌନ୍ଦର୍ଯ୍ୟ-ସୁଧା ପାନ
କରିବାର ସୁବିଧା ପାଇପାରିଲେ । ତା ସହିତ କିଶୋରୀ ବିଷୟରେ
ମଧ୍ୟ ଭାବିବାକୁ ଅବସର ପାଇଲେ । ବିଦୁଠାରୁ ସେ କିଶୋରୀ ବିଷୟ
ବହୁତ ଭାବିଲେ । କିଶୋରୀ—ସେ ବିଦୁଠାରୁ ଅଧିକ ସୁନ୍ଦର, ଅଧିକ
ସରଳ ଉପାଦାନରେ ଗଠିତ । ତାହାରି ଯୋଗୁଁ ସିନା ଚାରିମାସ କାଳ
ସେ ଜଗନ୍ନାଥ ମଙ୍ଗରାଜ ଘରେ କଟାଇ ଆସିଲେ । କିଶୋରୀ ନ ଥିଲେ
ଚାରି ମୁହୂର୍ତ୍ତ ସେଠାରେ ରହିବା ତାଙ୍କ ପକ୍ଷରେ ଯେ କଷ୍ଟକର ହୋଇ-
ଥାନ୍ତା । ସେ ବାଳିକା ହେଲେହେଁ ପ୍ରାପ୍ତବୟସ୍କାଠାରୁ ବଳି ତାର
ବୁଦ୍ଧି । ତାଙ୍କୁ କେତେ ଭଲ ପାଉ ନ ଥିଲା ସେ—ନିଜର ପ୍ରାଣଠାରୁ
ବଳି ଭଲ ପାଉଥିଲା । ଆହା , ତାର 'ସାନୁ ନନା' ଡାକଟି କି ମଧୁର,
କି ସରଳ ! ଶେଷରେ ତାଙ୍କରି ଯୋଗୁଁ ସିନା ସେ ପିତାଠାରୁ ଲଞ୍ଛନା
ପାଇଲା । କିଶୋରୀ ପରି ବନ୍ଧୁ କଣ ସେ ଜୀବନରେ ପାଇବେ ?
କିନ୍ତୁ ରାଜକିଶୋର ବଡ଼ କୃତଘ୍ନ—ବଡ଼ ସ୍ୱାର୍ଥପର । ତା ପରି ଉପ-
କାରୀର ସେ ପ୍ରତ୍ୟୁପକାର କଣ କରିଛନ୍ତି ଭଲା ? ଏପରିକି ସୁଦୀର୍ଘ ଏକ
ବର୍ଷକାଳ ଧରି ତା ବିଷୟରେ ପଦେମାତ୍ର ଭାବିବାର ଅବସର ପାଇ
ନାହାନ୍ତି । ଛି, ଛି, କି ଅନ୍ୟାୟ ନ କରିଛନ୍ତି ସେ ! !

ରାଜକିଶୋର ବହୁତ ଭାବିଚିନ୍ତି ସ୍ଥିର କଲେ, କିଶୋରୀ ପାଖକୁ ଖଣ୍ଡିଏ ପତ୍ର ଦେବେ । ସେ ପ୍ରତ୍ୟୁତ୍ତରରେ ତାର ଭଲମନ୍ଦ କଥା ଲେଖିବ ଅବଶ୍ୟ । 'ମୁଁ ଭଲ ଅଛି' ଏହି ଦୁଇଟି ପଦ ଶୁଣିବାକୁ ପାଇଲେ ହେଲା । ରାଜକିଶୋରଙ୍କ ପକ୍ଷରେ ସେହି ସ୍ବର୍ଗ !

ରାଜକିଶୋର କାଗଜ କଲମ ଘେନି ଚିଠି ଲେଖି ବସିଲେ । ଯଥାସମୟରେ ଚିଠିଲେଖା ଶେଷ ହେଲା । ପତ୍ରଟିକୁ ଥରେ ଆମୂଳ ପାଠ କରିଗଲେ । ତାପରେ ଲଫାଫାରେ ବନ୍ଦ କରି ଠିକଣା ଲେଖି-ବାକୁ ଆରମ୍ଭ କଲେ । 'ଶ୍ରୀମତୀ କିଶୋରୀ ଦେଈ' ଏହି ପର୍ଯ୍ୟନ୍ତ ଲେଖି ହାତ ଆଉ ଚାଲିଲା ନାହିଁ । ଅଙ୍ଗୁଳିର ଶିଥିଳତାରୁ କଲମଟା ଖସି ପଡ଼ିଲା । କାହା ଠିକଣାରେ ପତ୍ର ଦେବେ ? ଜଗନ୍ନାଥ ମଙ୍ଗରାଜ ଠିକଣାରେ ପତ୍ର ଦେବେ କିନା ! ଯେଉଁ ଜ ନାଥ ମଙ୍ଗରାଜ ସେ ଦିନ କହିଥିଲା, "ତୁ ମୋର ଝିଅକୁ ଖରାପ କରିଦେଲୁଣି" ତାରି ଠିକଣାରେ ପତ୍ର ଦେବେ ? ଉଚିତ କଥା ପଦେ କହିବାରୁ ଏକମାତ୍ର କନ୍ୟାକୁ ଲାଞ୍ଛନା ଦେବାକୁ ଯେ ଲବମାତ୍ର ବିଳମ୍ବ କଲା ନାହିଁ—ତା ହାତରେ ଏ ପତ୍ର ପଡ଼ିଲେ କୋମଳହୃଦୟା ବାଳିକାର କି ଶୋଚନୀୟ ଅବସ୍ଥା ନ ଘଟାଇବ ସେ ! ନା, ରାଜକିଶୋର ତାହା କରିପାରିବେ ନାହିଁ । ଜାଣି ଜାଣି ସରଳପ୍ରାଣା ଦେବୀପ୍ରତିମାଟିକୁ ଲାଞ୍ଛିତ କରା-ଇବେ ନାହିଁ ।

ସେ ଚିଠି ଖଣ୍ଡ ଶତଚ୍ଛିନ୍ନ ହୋଇ ଅଳିଆ ଗଦାରେ ସ୍ଥାନ ପାଇଲା । ପରୀକ୍ଷାର ଫଳ ବାହାରିଲା—ରାଜକିଶୋର ପାସ୍ କରିଛନ୍ତି । ପାସ୍ କରିଛନ୍ତି ବୋଲି ରାଜକିଶୋର ଯେତେ ଦୂର ଆନନ୍ଦିତ ନୁହନ୍ତି, ତହୁଁ ବଳି ଆନନ୍ଦିତ ହେଲେ କଲେକ୍ଟରର ବୈକୁଣ୍ଠ ବାବୁ । ଘରେ ଘରେ ପଡ଼ି ଗଲିବ ଛାତ୍ରଟି ପାସ୍ କରିଛି ! ସେ ଶତମୁଖରେ ରାଜକିଶୋରଙ୍କ ପ୍ରଶଂସା ଗାନ କରିବାକୁ ଲାଗିଲେ । ମେସର ଅନ୍ୟାନ୍ୟ ଛାତ୍ରମାନଙ୍କର

ମଧ୍ୟ ଆନନ୍ଦର ସୀମା ନାହିଁ । ସେମାନେ ସମସ୍ତେ ରାଜକିଶୋରଙ୍କଠାରୁ ଭୋଜି ଅଦାୟ କରିବାର ଚେଷ୍ଟାରେ ଲାଗିପଡ଼ିଲେ ।

ରାଜକିଶୋର ପାସ୍ କଲେ ସତ, ନିଶ୍ଚିନ୍ତ ହୋଇ ପାରିଲେ ନାହିଁ । ଯେଉଁ ବିଷୟରେ ଲକ୍ଷ୍ୟ ରଖି ପାସ୍ କଲେ, ସେ କାର୍ଯ୍ୟଟି କିପରି ପାଇବେ, ସେହି ଚିନ୍ତା ତାଙ୍କୁ ଅଧୀର ଅସ୍ଥିର କରି ପକାଇଲା । କିପରି ପୋଲିସ ବିଭାଗରେ ଭର୍ତ୍ତି ହେବେ, ଦିବା ନିଶି ବସି ଭାବିବାକୁ ଲାଗିଲେ ।

ସେ ଦିନ ସକାଳୁ ନାନା କଥା ଭାବି ଭାବି ମନଟା ତାଙ୍କର ବଡ଼ ଖରାପ ଥିଲା । ନଅଟା ବାଜିବା ଉପରେ । ମେସ୍ ବାରନ୍ଦାରେ ସେ ଟହଲ କରୁଛନ୍ତି, ସେହି ସମୟରେ 'ସମାଜ' 'ଦୈନିକ ଆଶା' ଡ଼ାକି ଡ଼ାକି ଜଣେ ଖବରକାଗଜ ବିକାଳିଟା ଧରି ରାସ୍ତା ଉପରେ ଚାଲି ଯାଉଥିଲା । ମନ ପରିବର୍ତ୍ତନ ଲାଗି ସେ ଖଣ୍ଡେ ସମାଜ କିଣି ପଢ଼ିବାକୁ ଆରମ୍ଭ କଲେ । କିନ୍ତୁ ନିର୍ଦ୍ଦିଷ୍ଟ ଭାବରେ କୌଣସି ସ୍ତମ୍ଭଟା ନ ପଢ଼ି ପ୍ରଥମେ ବଡ଼ ବଡ଼ ଅକ୍ଷର ଉପରେ ଆଖି ବୁଲେଇଲେ । "ରେଲଗାଡ଼ି ଲଟ୍‌ପଟାଙ୍ଗ" "ବିନା ମେଘରେ ବଜ୍ରପାତ" "ବେହାରରେ ନୂଆ ଅର୍ଡିନାନ୍‌ସ" ଇତ୍ୟାଦି ବହୁତ ଦେଖିଲେ । ଶେଷ ସ୍ତମ୍ଭର ନିମ୍ନ ଭାଗରେ ଲେଖାଅଛି, "ପାଞ୍ଚଶ ଟଙ୍କା ପୁରସ୍କାର ।" ତାଙ୍କର କୌତୂହଳ ହେଲା । ସେ ଆଗ ସେହି "ପାଞ୍ଚଶ ଟଙ୍କା ପୁରସ୍କାର"କୁ ପଢ଼ି ବସିଲେ—

"ଆଜକୁ ଅଠ ଦିନ ହେବ ଆମ୍ଭର ଏକମାତ୍ର କନ୍ୟା କିଶୋରୀ ଦେଇ ନିରୁଦ୍ଦେଶ ହୋଇଅଛି । ଖୁବ୍ ସମ୍ଭବ କୌଣସି ଦସ୍ୟୁଦଳ ଦ୍ୱାରା ସେ ଅପହୃତା । ଯଦି କେହି ତାର ସନ୍ଧାନ ଦିଅନ୍ତି, ତେବେ ପାଞ୍ଚଶ ଟଙ୍କା ପୁରସ୍କାର ପାଇବେ । କନ୍ୟାଟିର ବୟସ ୧୩ବର୍ଷ । ବର୍ଣ୍ଣ

ଗୌର । ଗଠନ ମଧ୍ୟମ ପ୍ରକାର । ତାର ନାସିକାର ବାମ ପାର୍ଶ୍ୱରେ ଗୋଟିଏ କଳାଜାଇ ଅଛି ।”

ଜଗନ୍ନାଥ ମଙ୍ଗରାଜ
ଗ୍ରାମ—ଚଉଦଶପ୍ରଗଣା
ଥାନା—ସାଲେପୁର
ପୋ: ଅ: ସାଲେପୁର
ଜି: କଟକ

କିଶୋରୀ ନିରୁଦ୍ଦେଶ ? ଦସ୍ୟୁମାନଙ୍କ ଦ୍ୱାରା ଅପହୃତା ? ରାଜକିଶୋର ପ୍ରଥମେ ବିଶ୍ୱାସ କରିପାରିଲେ ନାହିଁ । ସେ ବିଜ୍ଞପ୍ତିକୁ ଥରେ, ଦୁଇଥର, ତିନଥର ପଢ଼ିଲେ । ତାଙ୍କର ମୁଣ୍ଡ ଘୂରାଇଦେଲା । ହାୟ ! କିଶୋରୀ—ତାଙ୍କର ଦୁର୍ଦ୍ଦିନର ଏକମାତ୍ର ସାଥୀ—ଅତିପ୍ରିୟ ବନ୍ଧୁ—କେଉଁ ଚଣ୍ଡାଳ ଏପରି ଦୁର୍ଦ୍ଦଶା ଘଟାଇଲା ତାର ? ଏପରି ଦୁଃଖର ବାର୍ତ୍ତା ଶୁଣି ରାଜକିଶୋର କିଣ ନୀରବ ରହିବେ ? ତେବେ ଏ କ୍ଷେତ୍ରରେ ତାଙ୍କର କର୍ତ୍ତବ୍ୟ କଣ ? ସେ ବହୁତ ଭାବିଲେ ; ମାତ୍ର କିଛି ସ୍ଥିର କରିପାରିଲେ ନାହିଁ । ଦୁଃଖରେ, ବେଦନାରେ ତାଙ୍କର ହୃଦୟ ବିଦୀର୍ଣ୍ଣ ହେବାକୁ ଲାଗିଲା । ସେହିଠାରେ ସେ ଶୂନ୍ୟକୁ ଚାହିଁ ଜୀବନ୍ମୃତ ପରି ବସି ରହିଲେ ।



## —ଷଷ୍ଠ ପରିଚ୍ଛେଦ—

ଇଚ୍ଛା ଥିଲେ ରାସ୍ତା ମିଳେ । ରାଜକିଶୋର କଲେକ୍ଟର ସାହେବଙ୍କ ସୁପାରିସରେ ପୋଲିସ ହେଡ଼କନେଷ୍ଟବଲ୍ ଚାକିରିଟିଏ ପାଇଲେ । ବହୁଦିନ-ପୋଷିତ ଆଶା ତାଙ୍କର ଫଳବତୀ ହେଲା ସତ; ମାତ୍ର ସେ

ତହିଁରେ ସୁଖୀ ହୋଇପାରିଲେ ନାହିଁ । ତାଙ୍କର ଇଚ୍ଛା, କଟକ ଜିଲ୍ଲାର ସାଲେପୁର ଥାନାରେ ଚାକିରି ଖଣ୍ଡିଏ ପାଇଥିଲେ ଭଲ ହୋଇଥାନ୍ତା । ତଦ୍ଦ୍ୱାରା ସେ କିଶୋରୀର ଅନୁସନ୍ଧାନ କରିବାକୁ ସୁଯୋଗ ପାଇଥାନ୍ତେ । ଯାହାହେଉ, ସେ କିଶୋରୀ ବିଷୟରେ ଏକ-ବାରେ ହତାଶ ହେଲେ ନାହିଁ । ପୁଲିସ ବିଭାଗରେ ଯେତେବେଳେ ପ୍ରବେଶ ଲାଭ କଲେଣି, ଯେ କୌଣସି ପ୍ରକାରେ ହେଉ ସେ ନିଶ୍ଚୟ ତାର ଅନୁସନ୍ଧାନ କରିବେ ।

ରାଜକିଶୋରଙ୍କର ଆଶାପଥ ଚାହିଁ ସମୟ ଅପେକ୍ଷା କରିପାରିଲା ନାହିଁ । ସେ ତାର ସ୍ୱାଭାବିକ ଗତିରେ ଗଡ଼ି ଚାଲିବାକୁ ଲାଗିଲା । ଚାହୁଁ ଚାହୁଁ ବର୍ଷଟାଏ ବିତିଗଲା । ରାଜକିଶୋର କିଶୋରୀର ଅନୁ-ସନ୍ଧାନ କରିବା ଦୂରେ ଥାଉ, ମୁଣ୍ଡ ଖର୍ଚ୍ଚ କରି କାର୍ଯ୍ୟ କରିବା ଭଳି ଉପଯୁକ୍ତ 'କେସ୍' ଗୋଟାଏ ସୁଦ୍ଧା ପାଇଲେ ନାହିଁ । ସେ ଯାହା ଭାବୁଥିଲେ—ପୁରୀ ଟାଉନ ଥାନାରେ ରହିଲେ ଅତ୍ୟଳ୍ପ ଦିନ-ମଧ୍ୟରେ ଧୁରନ୍ଧର ପୁଲିସଟିଏ ହୋଇଯିବେ , ସେ ଆଶା ତାଙ୍କର ନିରାଶାରେ ପରିଣତ ହେବାକୁ ଲାଗିଲା ।

ସେ ଦିନ ଅତି ପ୍ରତ୍ୟୁଷରେ ଉଠି ସେ ଥାନା ବାରନ୍ଦାରେ ଟହଲି କରୁ କରୁ ଭାବୁଛନ୍ତି—କଣ କରିବେ ? କିଶୋରୀର ଅନୁସନ୍ଧାନ କରିବେ କିପରି ? ଯଦି କୌଣସି ଉପାୟରେ ବଦଳି ହୋଇ ସାଲେପୁର ଯାଇପାରନ୍ତେ······ । ସେହି ସମୟରେ ମଧୁ ପଡିଆରୀ ଆସି ଖବର ଦେଲା—ଗତ ରାତ୍ରିରେ ତା ଘରୁ ପ୍ରାୟ ଟଙ୍କା ଚାରି ହଜାରର ମାଲ୍ ଚୋରି ହୋଇଯାଇଛି । ରାଜକିଶୋର ସଙ୍ଗେ ସଙ୍ଗେ ଏତଲା ଲେଖି ବସିଲେ ।

ତିନି ଦିନ ବିତିଗଲାଣି, ଯଥାରୀତି ପୁଲିସ ତଦନ୍ତ ଚାଲିଛି; ମାତ୍ର ତଦନ୍ତରେ କୌଣସି ଫଳ ହେଲାପରି ଜଣାଯାଉ ନାହିଁ । ରାଜକିଶୋର

ରାତିରେ ଶୋଇ ଭାବିବାକୁ ଲାଗିଲେ—"ମୁଁ କିଶୋରୀର ଅନୁସନ୍ଧାନ କରିବା ଲାଗି ବରାବର ଭାବୁଥିବାରୁ ଭଗବାନ ଏହି ଚୋରି କେସ୍‌ଟି ମୋ ହାତରେ ଦେଇ ବୋଧହୁଏ ମୋତେ ପରୀକ୍ଷା କରୁଛନ୍ତି । ଏ ଚୁଡ଼ାନ୍ତ ସାହସୀ କେସ୍‌ର ଯଦି କିଛି କିନାରା କରି ନପାରେ, ତେବେ କିଶୋରୀର ଅନୁସନ୍ଧାନ ମୋ ପକ୍ଷରେ ନିତାନ୍ତ ଅସାଧ୍ୟ ଓ ଏକାନ୍ତ ଅସମ୍ଭବ । ତିନି ଦିନ ପୂର୍ବ ଘଟଣାର ଅନୁସନ୍ଧାନ କରି ଯଦି ପ୍ରକୃତ ଆସାମୀକୁ ଧରାଯାଇ ନ ପାରେ, ତେବେ ଏକବର୍ଷ ପୂର୍ବ ଘଟଣାର ଅନୁସନ୍ଧାନ କରି ଆସାମୀକୁ ଗିରଫ କରିବା ତ ସହଜ ନୁହେ । ନା, ପ୍ରାଣପଣ ଚେଷ୍ଟାରେ ମଧ୍ୟ ପଣ୍ଡିଆଣୀ ଘରେ ହୋଇଥିବା ଡକାୟିତି ମାମଲାର ପ୍ରକୃତ ଆସାମୀକୁ ଗିରଫ କରିବି—ତାପରେ ଯାଇ କିଶୋରୀ କଥା । ଏ କେସ୍‌ରେ ଯଦି 'ଫେଲ୍' ହୁଏ, ତେବେ କିଶୋରୀ ଚିନ୍ତା ହୃଦୟରୁ ଦୂର କରିଦେବାକୁ ହେବ ।"

ରାଜକିଶୋର ହୃଦୟରେ ନୂତନ ଆଶା ବାନ୍ଧି ସରଜମିନ ତଦନ୍ତ କରିବାକୁ ବାହାରିଲେ । ପ୍ରାୟ ୪ଘଣ୍ଟା କାଳ ଲାଗି ତନ୍ନ ତନ୍ନ କରି ସମସ୍ତ ତଦନ୍ତ କରି ଫେରିଲେ । ସେ ଦିନ ରାତିରେ ତାଙ୍କର ନିଦ୍ରା ହେଲା ନାହିଁ । ସେ ବିଛଣାରେ ପଡି ସେ ବିଷୟ ଭାବିବାକୁ ଲାଗିଲେ । ସନ୍ଧ୍ୟା ସମୟରେ ଇନ୍‌ସପେକ୍ଟର ଓ ସବ୍ ଇନ୍‌ସପେକ୍ଟର ବାବୁଙ୍କ ମଧ୍ୟରେ ସେହି ଡକାୟିତି କେସ୍ ନେଇ ଯେଉଁସବୁ ବିଷୟରେ ଆଲୋଚନା ପଡିଥିଲା, ସେ ସମସ୍ତ ମଧ୍ୟ ଭାବିଲେ । କିନ୍ତୁ ସେ ବିଷୟରେ ସେ ଯେତିକି ଭାବିବାକୁ ଲାଗିଲେ, ସେହି ପରିମାଣରେ ତାଙ୍କର ମତ ଇନ୍‌ସପେକ୍ଟର ଓ ସବ୍ ଇନ୍‌ସପେକ୍ଟର ବାବୁଙ୍କ ସହିତ ଅମେଳ ହେବାକୁ ଲାଗିଲା । ସବ୍ ଇନ୍‌ସପେକ୍ଟର ଓ ଇନ୍‌ସପେକ୍ଟର ବାବୁଙ୍କ ମନ୍ତବ୍ୟ ଯେ, ସେ ଡକାୟିତି କୌଣସି ବିଦେଶୀୟ ଚୋରଦ୍ୱାରା ସାଧିତ ହୋଇଅଛି ।

ପୁରୀ ସହରର କୌଣସି ଲୋକ ସେ ସମ୍ପର୍କରେ ସଂଯୁକ୍ତ ନୁହନ୍ତି । କିନ୍ତୁ ରାଜକିଶୋର ସେଥିରେ ଏକମତ ହୋଇପାରିଲେ ନାହିଁ । ସେ ମନେ ମନେ କହିବାକୁ ଲାଗିଲେ—ଏ ଚୋରି କୌଣସି ବିଦେଶୀୟ ଲୋକଦ୍ୱାରା ହୋଇଥିବାର ଅନୁମାନ କରି ସବ୍ ଇନ୍ସପେକ୍ଟର ଓ ଇନ୍ସପେକ୍ଟର ଉଭୟେ ଏକ ସ୍ଥାନରେ ଭୁଲ କରୁଛନ୍ତି । ଏ ସିନ୍ଧି କୌଣସି ବିଦେଶୀୟ ଚୋରଦ୍ୱାରା ହୋଇ ନାହିଁ । ଏ କଥା ଧ୍ରୁବ ସତ୍ୟ । ଏଠାକାର ଜଣା ଶୁଣା ଲୋକ, ବିଶେଷତଃ ଜନାର୍ଦ୍ଦନ ପଢ଼ିଆରୀ ବା ତାଙ୍କ ଘରର କୌଣସି ଲୋକର ସହାୟତାରେ ହୋଇଛି, ସନ୍ଦେହ ନାହିଁ ।

ରାଜକିଶୋରଙ୍କର ଏରୂପ ଅନୁମାନର ଉପଯୁକ୍ତ କାରଣ ଦର୍ଶାଇବା ପୂର୍ବରୁ ସିନ୍ଧି ହୋଇଥିବା ସ୍ଥାନ ଏବଂ ତାହାର ଗୃହଦୃଶ୍ୟ ଦେଖାଇଦେଲେ ପାଠକମାନଙ୍କୁ ଅନେକ ସୁବିଧା ହେବ । ସେମାନେ ରାଜକିଶୋରଙ୍କର ହେଉ ବା ଇନ୍ସପେକ୍ଟରଙ୍କର ହେଉ, କାହାର ପକ୍ଷ ସମର୍ଥନ କରିବାକୁ ସୁବିଧା ପାଇପାରିବେ ।

ମଧୁ ପଢ଼ିଆରୀ ଘରଟି ଚୂଡ଼ଙ୍ଗ ସାହିର ଠିକ୍ ମଝିରେ । ତାଙ୍କ ଘରକୁ ଲଗି ପୂର୍ବ ପଶ୍ଚିମ ଦୁଇ ପାଖରେ ଜନାର୍ଦ୍ଦନ ପଢ଼ିଆରୀ ଓ ସଦେଇ ପାଟସାଣୀଙ୍କର ବାସଗୃହ । କୌଣସି ଲୋକ ବାଡ଼ିପାଖରୁ ଆସି ସେ ଘରେ ପ୍ରବେଶ କରିବାର ପଥ ନାହିଁ । ଉଚ୍ଚ ଏବଂ ଘନ ସନ୍ନିବିଷ୍ଟ ନାଗଫେଣିଆ ବାଡ଼ ଚାରିପାଖରେ ପାଚେରୀ ପରି ରହିଛି । ଏକମାତ୍ର ପ୍ରବେଶ ପଥ ଅଛି ଜନାର୍ଦ୍ଦନ ପଢ଼ିଆରୀ ଘରର ଦକ୍ଷିଣ ପଶ୍ଚିମ କୋଣରେ । ସେଠାରେ ମଧ୍ୟ ସେହି ନାଗଫେଣିଆ ବଣ । କିନ୍ତୁ ସେ ବଣର ଉଚ୍ଚତା ବେଶୀ ନୁହେ । ସଦର ରାସ୍ତାରୁ ସେହି ବଣ ମଧ୍ୟକୁ ଗୋଟିଏ କ୍ଷୁଦ୍ର ପ୍ରବେଶ ପଥ ମଧ୍ୟ ଅଛି । ଆଜି ଯେଉଁ ବଖରାରେ ସିନ୍ଧି ହୋଇଛି, ସେ ବଖରାଟି ରୋଷେଇ ଘର । ରୋଷେଇ ଘରକୁ ଲାଗି ପଶ୍ଚିମ

ପାଖ ଘରଟି ପଢ଼ିଅସ୍ତ୍ରିଙ୍କର ଶୋଇବା ଘର ବା 'ବଡ଼' ଘର । ଜିନଷ ଚୋରିଯାଇଛି ସେହି ବଡ଼ ଘରୁ ।

ଏ ତ ଗଲା ଚୋର ହୋଇଥିବା ଘରର ପରିଚୟ । ବର୍ତ୍ତମାନ ଚୋର ବିଷୟରେ ରାଜକିଶୋରଙ୍କର ମନ୍ତବ୍ୟ ପ୍ରଣିଧାନ କରିବା । ସେ କହନ୍ତି—ଯେଉଁମାନେ ସିନ୍ଧି କରିଛନ୍ତି, ସେମାନେ ଜୋତା ପିନ୍ଧି ଅବା ଅନ୍ୟ କୌଣସି କଠିନ ଆବରଣ ଦ୍ୱାରା ପାଦକୁ ନିରାପଦ ରଖି ନାଗଫେଣିଆ ବଣ ଉପର ଦେଇ ଯାଇ ନାହାନ୍ତି । ତା ହୋଇଥିଲେ ନାଗଫେଣିଆ କଣ୍ଟା ଅଗସବୁ ସମାନଭାବରେ ଭାଙ୍ଗିଯାଇ ନ ଥାନ୍ତା । ଏକାଧିକ ଲୋକ ଯିବା ଆସିବା କଲେ ସୁଦ୍ଧା ସମସ୍ତଙ୍କର ପାଦ ଯେ କେବଳ ଗଛର ଅଗ୍ରଭାଗରେ ପଡ଼ିବ, ଏହାର ସେପରି କିଛି ବିଶେଷ କାରଣ ଅଛି କି ? ନାଗଫେଣିଆ ଗଛସବୁର ଅଗ ସମାନଭାବରେ ଭାଙ୍ଗି ଯାଇଥିବାରୁ ସହଜରେ ଅନୁମାନ କରାଯାଇ ପାରେ, ବଡ଼ ପଟା ବା ଟିଣ କିମ୍ବା ସେହିପରି ଅନ୍ୟ କୌଣସି ଚଉଡ଼ା ଜିନଷ ସେ କଣ୍ଟାଉପରେ ରଖି ତା ଉପର ଦେଇ ଲୋକ ଯାତାୟାତ କରିଛନ୍ତି । ଏ ଅନୁମାନ ଯଦି ସତ୍ୟ ହୁଏ,ତେବେ ଭାବିବାକୁ ହେବ,ସେ ବୃହଦାକାର ପଟା ବା ଟିଣଟି ସେ ସ୍ଥାନକୁ କେଉଁ ପଥ ଦେଇ ଆସିଲା । ପ୍ରବେଶ ଦ୍ୱାରଟି ଏତେ କ୍ଷୁଦ୍ର ଯେ କୌଣସିମତେ ଗୋଟିଏ ଲୋକ ପ୍ରବେଶ କରିପାରେ । କିନ୍ତୁ ନାଗଫେଣିଆ ଯେତେ ଆକାରରେ ଭାଙ୍ଗିଛି, ତାର ଲମ୍ବ ଛଅ ଫୁଟ୍ ଓ ଓସାର ତିନି ଫୁଟରୁ କମ୍ ହେବ ନାହିଁ । ସେହି କ୍ଷୁଦ୍ର ପ୍ରବେଶ ପଥରେ କ୍ଷୁଦ୍ର କ୍ଷୁଦ୍ର ପଟା ବା ଟିଣ ନେଇ ଛ ଫୁଟ୍ ଲମ୍ବ ଓ ତିନି ଫୁଟ ଓସାରରେ ମଧ୍ୟ ବିଛାଇ ଦିଆଯାଇ ପାରେ । ବଡ଼ ହେଉ ବା ଛୋଟ ହେଉ, ଟିଣ କିମ୍ବା ପଟା ଉପରେ ଯାଇ ଚୋର ଯଦି ସିନ୍ଧି କରିଥିବା ସ୍ୱୀକାର କରାଯାଏ, ଚୋର ନିଶ୍ଚୟ ସ୍ଥାନୀୟ, ଏ କଥା ସ୍ୱୀକାର କରିବାକୁ ହେବ ।

କାରଣ ମଧୁ ପଢ଼ିଆଙ୍କର ଯେତେବେଳେ ନିଦ ଭାଙ୍ଗେ, ଚୋର ସେତେବେଳେ ତାର ଘରଭିତରେ । ଚୋର ସିନ୍ଧଗାତ ଭିତରେ ପ୍ରବେଶ କରିବାର ସେ ପ୍ରତ୍ୟକ୍ଷ କରିଛି । ନିଦରୁ ଉଠି ହଠାତ୍ ଲୋକକୁ ସେ ଚିହ୍ନି ନ ପାରିବାରୁ ସଙ୍ଗେ ସଙ୍ଗେ ଦ୍ୱାର ଖୋଲି ଦାଣ୍ଡକୁ ବାହାରି ଆସିଛି । ଦାଣ୍ଡଦ୍ୱାରରେ ଡ଼ାକିବା ସମୟରେ କେହି ଜଣେ ପୂର୍ବୋକ୍ତ କ୍ଷୁଦ୍ର ପଥ ଦେଇ ପଳାୟନ କରିବାର ମଧ୍ୟ ଦେଖିଛି । ସଙ୍ଗେ ସଙ୍ଗେ ସେ ସେହି ପଥ ଦେଇ ବାଡ଼ିପାଖକୁ ଯାଇଛି; ମାତ୍ର ସେଠାରେ ଆଉ କୌଣସି ଲୋକକୁ ଦେଖିବାକୁ ପାଇ ନାହିଁ । ଏଥିରୁ ଅନୁମାନ କରାଯାଏ—ଗୃହମଧ୍ୟରେ ପ୍ରବେଶ କରିଥିବା ଚୋର ସିନ୍ଧପଥରେ ଜନୈକକୁ ବଢ଼ାଇ ଦେବା ପରେ ପରେ ଅନ୍ୟାନ୍ୟ-ମାନେ ଚୋରମାଲ୍ ଓ କଣ୍ଟାଉପରେ ପଡ଼ିଥିବା ପଟା ବା ଟିଣକୁ ଘେନି ସେହି କ୍ଷୁଦ୍ର ପଥ ଦେଇ ପଳାୟନ କରିଛନ୍ତି ଏବଂ ଗୃହମଧ୍ୟରେ ଥିବା ଚୋର ପରେ ଆସିଛି ।

ଗୋଡ଼ରେ ଜୋତା ଥିବାରୁ କଣ୍ଟା ତାହାର କୌଣସି ଅନିଷ୍ଟ କରିପାରି ନାହିଁ । ମଧୁ ପଢ଼ିଆଙ୍କ ଦ୍ୱାର ଖୋଲି ଦାଣ୍ଡକୁ ବାହାରିବା ସମୟରେ ସେହି ଦସ୍ୟୁ ବୋଧହୁଏ ପଳାୟନ କରିଛି । ତାହାହେଲେ ଆଉ ଗୋଟିଏ ଦିଗରେ ନଜର ଦେବାକୁ ହେବ । ଚୋର ଯଦି ଜୋତା ପିନ୍ଧି ଗୃହମଧ୍ୟରେ ପ୍ରବେଶ କରିଥାନ୍ତା, ସେ ଯେଉଁ ପଥ ଦେଇ ଯାଇଛି ସେହିଠାରେ ଚୂନ ଗୁଣ୍ଡାଏ ଜମା ଥିଲା—ଚୂନ ଉପରେ ଜୋତାର ଚିହ୍ନ ନିଶ୍ଚୟ ଥାନ୍ତା । କିନ୍ତୁ ଜୋତା ପରିବର୍ତ୍ତେ ପାଦର ଦାଗ ଅଛି । ଅଙ୍ଗୁଳିଗୁଡ଼ିକର ଦାଗ ସ୍ପଷ୍ଟ ଜଣା ପଡ଼ୁଛି । ତେବେ ଏଥିରୁ ନିଶ୍ଚୟ ବୁଝିବାକୁ ହେବ, ଚୋର ଖୋଲା ଗୋଡ଼ରେ ଯାଇଥିଲା । ସେ ଘରୁ ବାହାରି ଆସିବା ପୂର୍ବରୁ ଯଦି ତାର ସଙ୍ଗୀମାନେ ପଟା ବା

ଚିଣ ( ଯାହା କଣ୍ଟା ଉପରେ ପଡ଼ିଥିବାର ଅନୁମାନ କରାଯାଏ ) ଯେଉଁ ପଳାୟନ କରିଥାନ୍ତି, ତେବେ ସେ ଖାଲି ଗୋଡ଼ରେ ଏତେ ଶୀଘ୍ର କଣ୍ଟା ଉପର ଦେଇ ଆସିପାରନ୍ତା ନାହିଁ । ଆସିଲେ ମଧ୍ୟ କ୍ଷତ-ପଦରେ କୌଣସିମତେ ଦୌଡ଼ି ପଳାଇପାରନ୍ତା ନାହିଁ ।

ଉପର୍ଯ୍ୟୁକ୍ତ ବିଷୟସବୁ ଉତ୍ତମରୂପେ ଆଲୋଚନା କଲେ ସ୍ପଷ୍ଟ ବୁଝାଯିବ—ଚୋର ବିଦେଶୀ ନୁହେ । ଆଉ ମଧ୍ୟ ଜଣା ଯାଉଛି, ଜନା-ର୍ଦ୍ଦନ ପଟ୍ଟନାୟକ କମ୍ବା ତାର ପରିବାରର ସହାୟତାରେ ହୋଇଛି । କିନ୍ତୁ ସେତକ ଅପ୍ରମାଣ କରାଇବା ଉଦ୍ଦେଶ୍ୟରେ ଜଣେ ଲୋକ କ୍ଷୁଦ୍ର ପଥ ଦେଇ ପଳାୟନ କରିଛି । ପଞ୍ଚା ବା ଚିଣ ତାଙ୍କରି ଘରୁ ଯାଇ ଚୋର ହୋଇଛି ଏବଂ ସେହି ଜିନଷ ପୁଣି ତାଙ୍କର ଘରକୁ ଫେରି ଆସିଛି ।

ଅନ୍ୟାନ୍ୟ ଦସ୍ୟୁମାନେ ତାଙ୍କର ଘର ଦେଇ ପଳାୟନ କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ଦୁଇଦିନ ପୂର୍ବରୁ ଜନାର୍ଦ୍ଦନ ପଟ୍ଟନାୟକ ବିଦେଶ ଯିବା କଥା ମିଥ୍ୟା । ସେ ଏହି ଚୋରି ଉଦ୍ଦେଶ୍ୟରେ ଲୁଚି ରହି ବିଦେଶ ଯିବାର ମିଥ୍ୟା ରଚନା କରିଥିଲା ।

ରାଜକିଶୋର ବହୁତ ଆଲୋଚନା ମନେ ମନେ କରି ଶେଷରେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ । ମାତ୍ର ତାଙ୍କର ସନ୍ଦେହ ହେଲା ସବ୍ ଇନ୍ସପେକ୍ଟର ଓ ଇନ୍ସପେକ୍ଟରଙ୍କ ମନ୍ତବ୍ୟରେ । ଚୋର ବିଦେଶୀ ଲୋକଦ୍ୱାରା ହୋଇଥିବାର ସେମାନେ କାହିଁକି ମତ ଦେଅନ୍ତି ? ଠିକ୍‌ଏ ଆଲୋଚନା କଲେ ତ ସବୁ ବୁଝିପାରନ୍ତେ । ଭାବିଲେ—କାଲି ତାଙ୍କୁ ସମସ୍ତ ଘଟଣା କହିବି । ପୁଣି ଭାବିଲେ—କହି କିଛି ଲାଭ ନାହିଁ । ତାଙ୍କର କଥାବାର୍ତ୍ତାରୁ ଜଣାଯାଉଛି, ସେମାନେ ଏ କେସ୍‌ରେ ଆଦୌ ଉତ୍ସାହିତ ନୁହନ୍ତି । ମୋ କଥା କାନକୁ ନେଇ-

ପାରନ୍ତି, ନ ନେଇପାରନ୍ତି । ସେମାନଙ୍କୁ କିଛି ନ କହି ନୀରବରେ କାର୍ଯ୍ୟ କରିଯିବା ବରଂ ଭଲ । ଈଶ୍ୱରଙ୍କ ଅନୁଗ୍ରହରେ ଯଦି କୃତ-କାର୍ଯ୍ୟ ହୁଏ, ତେବେ·············



## —ଷଷ୍ଠ ପରିଚ୍ଛେଦ—

ଅଷ୍ଟମ ପାଳି ଚନ୍ଦନ ଯାତ । ରାଜକିଶୋର ନରେନ୍ଦ୍ରଙ୍କ ଗୃହ ଦେଖି ଫେରିଲ ବେଳକୁ ରାତି ଏଗାରଟା । ବସାକୁ ଯାଉଁ ଯାଉଁ ହଠାତ୍ କଣ ଭାବି ଜନାର୍ଦ୍ଦନ ପଡ଼ିଆରୀ ଦ୍ୱାରେ ଉପସ୍ଥିତ ହେଲେ । ଟିକିଏ ଠିଆ ହେଲେ ସେଠାରେ । ଭିତରୁ ପୁରୁଷ କଣ୍ଠର ଶବ୍ଦ ଶୁଣାଗଲ । ଜନାର୍ଦ୍ଦନ ପଡ଼ିଆରୀ ତ ଘରେ ନାହିଁ—ରାତି ଅଧରେ ତା ଘରେ ପୁରୁଷ କଣେ କିଏ ? ତାଙ୍କର କୌତୂହଳ ବଢ଼ିଲା । ସେ କାନ ପାତିଲେ; କିନ୍ତୁ କୌଣସି କଥା ପରିଷ୍କାର ଶୁଣାଗଲା ନାହିଁ । ରାଜକିଶୋର ସ୍ୱର ବଦଳାଇ ଡ଼ାକିଲେ—

"ପଡ଼ିଆରୀ ମଶାୟ ! ଓ ପଡ଼ିଆରୀ ମୋଶାୟ ! ଏକଟୁ ଶୁନେ ଯାନ ।" ସ୍ତ୍ରୀ କଣ୍ଠରେ ଅନୁଚ୍ଚସ୍ୱରରେ ଗୃହ ମଧ୍ୟରୁ ଶୁଣାଗଲା—"ଧୀରେନ୍ ଡ଼ାକୁଛି ପରା ।" ତା ପରେ ପୁରୁଷ କଣେ ବଡ଼ ପାଟିରେ କହି ଉଠିଲା, "ତୁଇ ଏସେଛିସ୍ ଧୀରେନ୍ ! ବାଃ, ଠିକ୍ ସମୟରେ ଅସିଛୁ ଏକା । ଆ—ଆ ।" ରାଜକିଶୋର ନୀରବରେ ଠିଆ ହୋଇ ରହିଲେ । ଅଗନ୍ତୁକଠାରୁ କିଛି ଉତ୍ତର ନ ପାଇ ଜନାର୍ଦ୍ଦନ ପଡ଼ିଆରୀର ମା ବୁଢ଼ୀ ଦାଣ୍ଡଦ୍ୱାରକୁ ଆସି କହିଲେ, "କିରେ ଧୀରୁ ? ଘରକୁ ଅସୁ ନାହୁ ?" ରାଜକିଶୋର ଉତ୍ତର କଲେ—"ଆପନି କାକେ ଗୃଚ୍ଛେନ ? ଆମି ଧୀରୁ ନଇ ।"

"ତୁ କିଏରେ ବାପ ?"

"ଆମାର ବାଡି କଲିକାତାୟ୍ । ଆମି ପଢ଼ିଆରି ମଶାୟ୍‌ର ସାକ୍ଷାତ୍ ଚାଇ । ଉନି ବାଡି ଆଛେନ ?"

"ନା, ସେ ତ ସେଇ କଲିକତା ଯାଇଛନ୍ତି ।"

ରାଜକିଶୋର ଅଶୁଦ୍ଧପର୍ଯ୍ୟାନ୍ତ ଭାବରେ କହିଲେ, "ପଢିଆରୀ ମଶାୟ୍ କଲିକାତା ଗେଛେନ୍ ? କୋନ ଦିନ୍ ଗେଲେନ ?"

"ସେ ତ ଆଜକୁ ଆଠ ଦିନ ହେଲା ଗଲଣି ।"

"କୋନ ଦିନ ଗେଲେନ, ସେ ଦିନଟି ଠିକ୍ କରେ ବଲିତେ ପାରେନ କି ? ଏକଟା ଜରୁରୀ କାଜ ଅଛେ ।"

ବୁଢ଼ୀ ଟିକିଏ ଚିନ୍ତା କରି କହିଲେ, "ଏଇ ସୋମବାର ଦିନ ତ ଯାଇଛନ୍ତି ।"

"ସୋମବାର ଦିନ—ଅଚ୍ଛା, କଟାର ସମୟ୍ ଗେଲେନ ?"

"ଖାଇପିଇ ଦିନ ନଟା ବେଳକୁ ତ ଗଲେ ।"

"ନଟା ବେଲକୁ ! ନୟ୍‌ଟାର ଆର ଟ୍ରେନ କୋଥାୟ୍ ? କଲିକାତାୟ୍ ଯେତେ ହେଲେ ସକାଲ ସାଡଟା କିମ୍ବା ସନ୍ଧ୍ୟା ୭ଟା, ଏର ମଧ୍ୟେ ଆର ଟ୍ରେନ ପାବେନ କୋଥାୟ୍ ?"

"କେଜାଣି ବାପ, ସେ କଥା କି ମୁଁ ଜାଣେ ? ସେ ତ ନଟା ବେଲକୁ ଯାଇଛନ୍ତି ।"

ଗୃହମଧ୍ୟରୁ ପୁରୁଷ ଜଣେ ଆସି ବୁଢ଼ୀଙ୍କ ନିକଟରେ ଠିଆ ହେଲା । ରାଜକିଶୋରଙ୍କୁ ଉଦ୍ଦେଶ୍ୟ କରି କହିଲା, "କିଏ ? କି ଦରକାର ବାବା ! ଦିନେଇଙ୍କୁ ଖୋଜୁଛ ? ବେଶ୍ , ସେ ଘରେ ନାହିଁ—କଲିକତା ଯାଇଛନ୍ତି ।" ରାଜକିଶୋର କହିଲେ, "ଆଜ୍ଞା, ଆମି ଶୁନେଛି ।"

"ହାଃ, ହାଃ, ଶୁନେଛି ? ଭଲ କଥା । ଚାଲିଯାଅ ତେବେ । ଠିଆ ହେଲ କାହିଁକି ? ଆଉ କିଛି କହିବାର ଅଛି ?"

"କବେ ଗେଲେନ ଓଇ କଥା ଜିଜ୍ଞାସା କରଚ୍ଛିଲାମ ।"

"କେନ ? ଦରକାର ? ଶୁଣିଲ ତ ଲୋକ ଘରେ ନାହିଁ— 'କେବେ ଗଲେ' 'କେଉଁବେଳେ ଗଲେ' ଏତେ ଜମା ଖର୍ଚ୍ଚ ଖୋଜିବାର ଦରକାର ?"

"ମଶାୟ, ଯ୍ୱାଡ ରାଗ କରଛେନ କେନ ? ତାତେ କିଛୁ କ୍ଷତି ଅଛେ ?"

"କ୍ଷତି ନାହିଁ କାହିଁକି ? ହତ୍ୟାଏ ହୋଇ ନାହିଁ ପଡ଼ଶାଘରେ ଗୋଟାଏ ସିନ୍ଧ ହୋଇ ଯାଇଛି । ଆଜିକାଲି ସମୟ ଯେ ରକମ— କାହାକୁ ବିଶ୍ୱାସ ଅଛି ? ନିଶାଖୋରମାନେ ତ ଚୋର କରୁଛନ୍ତି । କିରେ ବାପା, ତମେ ଯେମିତି ଦୁଧ, ରାବିଡ଼ି, ଛେନା ତାଡିଆ, ଅମାଲ୍ଟ, ରସଗୋଲା, ମାଛ, ମାଉଁସ, କାକରା, ଲଡ୍ଡୁ, ରୁଟି, ବିସ୍କୁଟ, ଗୁ, ସିଗାରେଟ ଖାଉଚ, ଆଜି କିଏ ସେମିତି ଗୁଲି ହେଉ ବା ଗଞ୍ଜେଇ ହେଉ ତାର ଗୋଟିଏ ଅମଳ ଖାଉଛି । ସେଥିପାଇଁ କିଣି ସେ ହେଲା ଚୋର ?"

ଲୋକଟି ଅନର୍ଗଳ ବକିଯିବାକୁ ଲାଗିଲା । ରାଜକିଶୋର ବାଧା ଦେଇ କହିଲେ, "ଆମାର ବିଶେଷ କାଜ—ଆସଚ୍ଛି ମଶାୟ, ନମସ୍କାର ।" ରାଜକିଶୋର ପ୍ରସ୍ଥାନ କରିବାର ଦେଖି ସେ ଲୋକଟି ବୃଦ୍ଧାଙ୍କୁ ଲକ୍ଷ୍ୟ କରି କହିଲା, "ମା, ମୁଁ ଆସୁଛି । ରାତି ବହୁତ ହୋଇଗଲାଣି ।" "ହଉରେ ବାପ, ଯା" କହି ବୃଦ୍ଧା ଦ୍ୱାର ବନ୍ଦ କଲେ ।

ରାଜକିଶୋର ପୂର୍ବରୁ ଯାଇ ନିକଟସ୍ଥ ଗୋଟାଏ ଗଳିରେ ଗୁପ୍ତଭାବରେ ଠିଆ ହୋଇଥିଲେ । ଲୋକଟି ଜନାର୍ଦ୍ଦନ ପଣ୍ଡିଆରା ଘରୁ ବାହାରି ମାର୍କଣ୍ଡେଶ୍ୱର ସାହି ଆଡ଼କୁ ଚାଲିଲା । ରାଜକିଶୋର ଅତି ସତର୍କତାର ସହିତ ତାର ଅନୁସରଣ କରିବାକୁ ଲାଗିଲେ । ସେ

ଲୋକର କଥା ତ ପୂର୍ବରୁ ଶୁଣିଥିଲେ—ବର୍ତ୍ତମାନ ତାର ଗୃହଦ୍ୱାର ଠାଣି ଦେଖି ରାଜକିଶୋର ଅକ୍ଲେଶରେ ବୁଝିପାରିଲେ ଯେ, ସେ ଗୁଲ୍ ହେଉ ବା ମଦ ହେଉ କୌଣସି ନିଶାରେ ନିମଜ୍ଜିତ । ତାଙ୍କର ସନ୍ଦେହ ଅତ୍ୟୁଚ୍ଚ ବଢ଼ିଲା । ସେ ମନେ ମନେ ନାନା କଥା ଭାବି ଭାବି ତାର ଅନୁସରଣ କଲେ । କିଛି ଦୂର ଯିବାପରେ ଲୋକଟି ଗୋଟିଏ ଜୀର୍ଣ୍ଣ ଗୃହଦ୍ୱାରର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ଡ଼ାକିଲା, "ବାଉରି,କବାଟ ଖୋଲ ।" ମୁହୂର୍ତ୍ତପରେ ଦ୍ୱାର ଖୋଲା ହେବାର ଶବ୍ଦ ଶୁଣାଗଲା । ରାଜକିଶୋର ତତ୍‌କ୍ଷଣାତ୍ ତାର ନିକଟବର୍ତ୍ତୀ ହୋଇ ସୁଦୀର୍ଘ ପ୍ରଣାମଟାଏ କରି କହିଲେ, "ଆଜ୍ଞା, ଆପଣଙ୍କୁ ମୁଁ କେତେ ଖୋଜିଲିଣି । ଜନାର୍ଦ୍ଦନ ପଢ଼ିଆରି ଆପଣଙ୍କ ପାଖକୁ ଗୋଟାଏ ଜରୁରି ଚିଠି ଦେଇଛନ୍ତି ।" ଲୋକଟି ଦଣ୍ଡେ କାଳ ନୀରବରେ ଠିଆ ହୋଇଗଲା । ତାପରେ କହିଲା, "ଏ—ଆମ ଦନେଇ ?"

"ଆଜ୍ଞା, ହଁ, ଗୋଟାଏ କଣ ଜରୁରି ଚିଠି ଦେଇଛନ୍ତି ।"

"କାହିଁ ଦେଖି ।"

"ମୁଁ ତ ଆପଣଙ୍କୁ କେବେ ଦେଖି ନାହିଁ । ଆପଣ ସେହି ଲୋକ କି ନା ଜାଣେ ନା । ଆପଣଙ୍କର ନାଁଟା କଣ କହିଲେ ?"

"ମୋହନ ଦାସ ମୋ ନାଁ ।"

"ହଁ ଆଜ୍ଞା, ଆପଣଙ୍କ ପାଖକୁ ତ ଚିଠି ଦେଇଛନ୍ତି, ଆପଣଙ୍କ ଘରଟା କେଉଁଠି କହିଲେ ?"

"ଏହି ଘର ପରା ।"

"ଏ ସାହି ନାଁ ତ ମୁଁ ଜାଣି ନାହିଁ... ......।"

"ଏ ସାହି ନାଁ ହେଉଛି ମାର୍କଣ୍ଡେଶ୍ୱର ସାହି ।"

"ଆଜ୍ଞା, ଠିକ୍ । ସେ ତ ମାର୍କଣ୍ଡେଶ୍ୱର ସାହି ବୋଲି କହୁଥିଲେ, ନଅନ୍ତୁ ତେବେ ଅପଣଙ୍କର ଚିଠି ।" ରାଜକିଶୋର କୁତ୍ତୁହଳ ପକେଟ ଦରଣ୍ଡିବାର ଛଳନା କରି ପ୍ରାୟ ପାଞ୍ଚ ମିନିଟ ପରେ କହିଲେ, "ମହାଶୟ, ଚିଠିଟା ତ ବସାରେ ରହିଗଲା । ଅପଣ ଟିକିଏ ଠିଆ ହୁଅନ୍ତୁ, ମୁଁ ଅବିକା ଦୌଡ଼ିଯାଇ ନେଇ ଅସୁଛି ।"

ରାଜକିଶୋର ଦୌଡ଼ି ଚାଲିଗଲେ । ମୋହନ ଦାସ ଠିଆ ହୋଇ ରହିଲା । ପାଞ୍ଚ ମିନିଟ, ଦଶ ମିନିଟ, କ୍ରମେ ପନ୍ଦର ମିନିଟ ଅତୀତ ହେଲା......କାହାରି ଦେଖା ନାହିଁ । ଦାସେ ନିତାନ୍ତ ବିରକ୍ତି-ଭରେ କହିଲେ, "ମାର ଶାଳା ଚୋରର କୋଉଠିକାର ଚିଠି ଦେଖାଉଛି । ମଣିଷ ଏତେବେଳକୁ କେଡ଼େ ନିଦ ଶୁଅନ୍ତାଣି ।" ତାପରେ ଦ୍ୱାର ବନ୍ଦ କରି ଗୃହ ଭିତରକୁ ଚାଲିଗଲେ । + + +

ରାଜକିଶୋର କୌଶଳକ୍ରମେ ଯେତେବେଳେ ଜାଣି ପାରିଲେ ମାର୍କଣ୍ଡେଶ୍ୱର ସାହିରେ ମୋହନ ଦାସ ଓ ଧୀରେନ୍ଦ୍ରନାଥ ସିଂହ ଦୁଇଜଣ ଏକନମ୍ବର ଗୁଲିଖୋର, ତାଙ୍କର ପୂର୍ବ ସନ୍ଦେହ ଦୃଢ଼ୀଭୂତ ହେଲା । ସେ ମୋହନ ଦାସ ଓ ଧୀରେନ୍ଦ୍ରନାଥ ସିଂହ ଉଭୟଙ୍କର ଅନୁସରଣ କରି ତାଙ୍କର ପ୍ରତ୍ୟେକ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । ଦିନ ଦୁଇଟା ମଧ୍ୟରେ ତାଙ୍କର ଉଦ୍ୟମ ସଫଳ ହେଲା । ସେମାନଙ୍କର ଅଉ ଦୁଇ ତିନିଟା ସଙ୍ଗୀ ଥିବାର ଲକ୍ଷ୍ୟ କଲେ; ଗୁଲି ଅଡ୍ଡାଟା ମଧ୍ୟ ଅବିଷ୍କାର କରିପାରିଲେ । କିନ୍ତୁ ସେ ଗୁଲିଅଡ୍ଡା ମଧ୍ୟରେ ପ୍ରବେଶ କରି ନ ପାରିଲେ କାର୍ଯ୍ୟୋ-ଦ୍ଧାର ଅଶା ବୃଥା । ରାଜକିଶୋରଙ୍କର ପ୍ରଧାନ ଚିନ୍ତା ହେଲା—ସେ ଅଡ୍ଡାରେ ପ୍ରବେଶ କରିବେ କି ନା । ଅଡ୍ଡାଟା ହେଉଛି କରେନ୍ଦ୍ର କୋଣରେ ହେମବାଈ ଘରେ । ରାଜକିଶୋରଙ୍କର ଚରିତ୍ରବଳ ଯଥେଷ୍ଟ

ଥିଲା । ସେ ବେଶ୍ୟା ଏବଂ ବେଶ୍ୟାଭକ୍ତମାନଙ୍କୁ ଅନ୍ତରର ସହିତ ଘୃଣା କରନ୍ତି । ସେ କହନ୍ତି—ବେଶ୍ୟାଗୃହ ସମସ୍ତ ପ୍ରକାର ପାପର ଅଗାର ଛଡ଼ା ଆଉ କିଛି ନୁହେଁ । ବର୍ତ୍ତମାନ କପରି ନିଜେ ସେହି ପାପାଗାରରେ ପ୍ରବେଶ କରିବେ ? ସେ ଭାବିଲେ—କାର୍ଯ୍ୟୋଦ୍ଧାର ପାଇଁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଗଧ ପାଦ ଧାରଣ କରିଥିଲେ । ସେ ବେଶ୍ୟାଳୟକୁ ଗଲେ ବା କ୍ଷତି କଣ ? ପରକ୍ଷଣରେ ପୁଣି ଭାବିଲେ—କିନ୍ତୁ ବେଶ୍ୟାଳୟକୁ ଯିବା ଅର୍ଥ ଯିବା ଆଉ ସଙ୍ଗେ ସଙ୍ଗେ ଫେରି ଆସିବା ତ ନୁହେ । ତଦ୍ୱାରା ବା ଲାଭ କଣ ? ବେଶ୍ୟା ସହିତ ଅନ୍ତରଙ୍ଗତା ସ୍ଥାପନ କରିବାକୁ ହେବ । ବେଶ୍ୟା ସହିତ ଅନ୍ତରଙ୍ଗତା ସ୍ଥାପନ କରିବା ଅର୍ଥ— ପାପ ନୁହେ, ମହାପାପକୁ ପ୍ରଶ୍ରୟ ଦେବା । ତାହାର ପରିଣାମ କଣ ହେବ, କିଏ କହିପାରେ ? ନିଜେ ଯେ ଦିନେ ଗୋଟିଏ ପାପର ଅବତାର ହୋଇ ଦଣ୍ଡାୟମାନ ନ ହେବେ, ତାର ବା ସ୍ଥିରତା କଣ ? ସମୁଦ୍ରରେ ଝାସ ଦେଲେ ଅତଳ ଗର୍ଭକୁ ଯିବ ନାହିଁ ବୋଲି କିଏ କହିପାରେ ?

ବ୍ରଜକିଶୋର ମନେ ମନେ ବହୁତ ଯୁକ୍ତି ତର୍କ କରି ଶେଷରେ ସ୍ଥିର କଲେ—ଯାହାହେଉ ବେଶ୍ୟା ଘରକୁ ଯିବାକୁ ହେବ ଏବଂ ତା ସହିତ ଅନ୍ତରଙ୍ଗତା ସ୍ଥାପନ କରିବାକୁ ହେବ । ଅନ୍ତରଙ୍ଗତା ସ୍ଥାପନ ପାଇଁ ଯାହା ନ କଲେ ନ ଚଳେ, ତାହା ବାଧ୍ୟକ ଭାବରେ କରିବାକୁ ହେବ । ସେଥିରେ ଯଦି ମନର ପରିବର୍ତ୍ତନ ଘଟେ ଏବଂ ନରକରେ ଦିନେ ବୁଡ଼ିବାକୁ ପଡ଼େ, ପଡୁ । ସେଥିପାଇଁ ଆଉ ବା ଉପାୟ କଣ ? ସୁକର୍ମ, କୁକର୍ମ ଭେଦ ରଖି କାର୍ଯ୍ୟ କଲେ କର୍ତ୍ତବ୍ୟରେ ଏଣେ ଯେ ବାଧା ପଡୁଛି ।

ସନ୍ଧ୍ୟା ଉତ୍ତୀର୍ଣ୍ଣପ୍ରାୟ । ନରେନ୍ଦ୍ରକୁ ଚନ୍ଦନ ବଢ଼ାଇ ଶେଷ କରି ମଦନମୋହନ ବଡଦେଉଳକୁ ବିଜେ ହେଉଛନ୍ତି । ଘଣ୍ଟ, କାହାଳୀ

ପ୍ରବୃତ୍ତ ବାଦ୍ୟରେ ବଜାର ପ୍ରକମ୍ପିତ ହେଉଛି । ବସିକା ଯୁବକ-ମାନେ ଦଳ ଦଳ ହୋଇ ବିଚରଣ କରୁଛନ୍ତି । କିଏ କାନ୍ଧ ଉପରେ ପଡିଥିବା ପାଟିଲ ଗାମୁଛାରେ ମୁହଁଟା ପୋଛି ପକାଇ କନତାଙ୍କୁ ଗୁହଁ ଦେଉଛି—ତାର ପାଟଲ ଗାମୁଛା ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି କି ନାହିଁ, ସେ ଲକ୍ଷ୍ୟ କରିବାରେ ବ୍ୟସ୍ତ । କିଏ ହାତରେ ବାନ୍ଧିଥିବା ମଲ୍ଲୀହାର ଦେଖାଇ ହେବା ଅଭିପ୍ରାୟରେ କଥା କହିଲାବେଳେ ବାରମ୍ବାର ଅଯଥା ହାତ ହଲାଇ ହେଉଛି । କେହି କେହି ଅତର-ବୋଳା ସିଲ୍କ ପଞ୍ଜାବୀ ପିନ୍ଧା ବସିକା ନିଜର ମଦନ-ମର୍ଦ୍ଦିତ ଚେହେରା ଦେଖାଇବା ଉଦ୍ଦେଶ୍ୟରେ ଅଯଥା ଉଚ୍ଚହାସ୍ୟ କରିବାରେ ପ୍ରମତ୍ତ । ଚନ୍ଦନ-ଚର୍ଚ୍ଚିତ ନୂତନ ନାଗରମାନଙ୍କୁ ଭୁଲାଇବା ପାଇଁ ହେମ ତାର ଯଥାସାଧ ଚେଷ୍ଟାରେ ବେଶବିନ୍ୟାସ କରି ଦ୍ୱାରଦେଶରେ ଦଣ୍ଡାୟମାନ ହୋଇଛି । କେବଳ ଦଣ୍ଡାୟମାନ ହୋଇ ନାହିଁ—ଶୀକାର ଦେଖି ବେଳେ ବେଳେ କୁଟିଳ-କଟାକ୍ଷ-ବାଣ ମଧ୍ୟ ପ୍ରହାର କରୁଛି । ସକାଳୁ ଉଠି ସେ କାହା ମୁହଁଟା ଗୁହଁଥିଲା କେଜାଣି, ତାର ସେ ଦିନ ମନୋରଥ ପୂର୍ଣ୍ଣ ହେଲା ନାହିଁ । ତୂଣୀର ଶୂନ୍ୟ ହେଲା—ସେ ନିଜେ ମଧ୍ୟ ଶ୍ରାନ୍ତ କ୍ଳାନ୍ତ ହୋଇ ପଡିଲା । ଗୋଟାଏ ସୁଦ୍ଧା ଶୀକାର ତାର ହସ୍ତଗତ ହେଲା ନାହିଁ । ସେ ବଡ ବ୍ୟଥିତ ହୃଦୟରେ କବାଟଟି ଦରଅଉଜା କରିଦେଇ ଘର ଭିତରକୁ ଗୁଲିଗଲା ।

ସେତେବେଳକୁ ମଦନମୋହନ ରଜାଙ୍କ ନଅର ପାଖରେ ହୋଇଗଲେଣି । ନରେନ୍ଦ୍ର ପାଖରୁ ଲୋକଙ୍କର ଭିଡ଼ କମିଗଲାଣି । ରାଜକିଶୋର ଆସି ହେମର କବାଟରେ ହାତ ମାରିଲେ । ଶବ୍ଦ ଶୁଣି ହେମ ଦ୍ୱାର ନିକଟକୁ ଦୌଡ଼ି ଆସିଲା । ସହସା ଜଣେ ଅପରିଚିତ ବାବୁଙ୍କୁ ଦେଖି ଆନନ୍ଦରେ ତାର ଅନ୍ତର ନାଚି ଉଠିଲା । ସେ ଗଣିକା-ସ୍ୱଭାବ-ସୁଲଭ ଯୁବକ-ଭୁଲା ଭଙ୍ଗୀରେ ଥରେ ଗୁହଁଦେଇ ମୁହଁ ତଳକୁ

କରିନେଲା । ତା ପରେ କହିଲା, "ଭିତରକୁ ଆସୁ ନାହାନ୍ତି ।" ରାଜକିଶୋର ଖଣା ଆପତ୍ତିରେ ଗୃହମଧ୍ୟରେ ପ୍ରବେଶ କଲେ । ହେମ କୌଣସି କଥା କହିବା ପୂର୍ବରୁ ସେ କହିଲେ, "ବାଇଜୀ ! ମୁଁ ଆସିଛି ଟିକିଏ ମଜଲିସ ମଜଲିସପାଇଁ—କଣ ବୁଝିଲ ? ଗାନଟାନ ଯଦି ନ ହେଲେ ହେବ ନାହିଁ ।" ହେମ ତାର କୌଳିକ ଅଭ୍ୟାସାନୁଯାୟୀ ନାନାଭଙ୍ଗୀରେ ନିଜର ରୂପ ଯୌବନ ଦେଖାଇ ଦେଖାଇ କହିଲା, "ହଁ ବୁଝିଲି ଯେ, ମୁଁ ଏଠାରେ ଏକୁଟିଆ......" ରାଜକିଶୋର ବାଧା ଦେଇ କହିଲେ, "ମୁଁ ସେ ସବୁ ଶୁଣିବାକୁ ଚାହେଁ ନା । ନିଅ, ଏତିକିରେ ଆଗ ଆୟୋଜନ କର—ତାପରେ ଦେଖାଯିବ । ଏ କେବଳ ଦର୍ଶନୀ ସ୍ୱରୂପ ଦିଆଗଲା ।" ହେମ ଦେଖିଲା ଦଶଟଙ୍କିଆ ନୋଟ ଖଣ୍ଡେ । ତାର ଗୋଡ ପାଇ ଆକାଶରେ ଲାଗିଗଲା । ମନେ ମନେ କହିଲା, "ଆଜି କି ଯୋଗରେ ରାତି ପାହିଥିଲା କେଜାଣି !" ପୁରୀ ସହରରେ ସେ ନଅ ବର୍ଷ କାଳ ବ୍ୟବସାୟ କଲାଣି—ଏକାଳୀନ କାହାଠାରୁ ପାଞ୍ଚ ଟଙ୍କା ସୁଦ୍ଧା ପାଇ ନାହିଁ । ଆଜି ଦର୍ଶନୀ ବାବଦକୁ ଦଶ ଟଙ୍କା ଦେଖି ସେ ବଡ ବିସ୍ମିତ ହେଲା । ମଜଲିସ ମଜଲିସ ପରେ ପୁଣି କଣ ନ ମିଳିବ ! ସେ ଟିକିଏ ଚିନ୍ତାକରି କହିଲା, "ଆପଣ ଏତେବେଳେ କହିଲେ । ଆଗରୁ ଖବର ଦେଇଥିଲେ......"

ରାଜକିଶୋର କହିଲେ "କଣ, ବିଳମ୍ବ ହେବ କହୁଛ ?"

"ହଁ, ଟିକିଏ ଡେରି ହେବ । ଆପଣ ଅଧ ଘଣ୍ଟାଏ ଦେଢ ଘଣ୍ଟା ଅପେକ୍ଷା କଲେ......"

"ଭଲକଥା, ଯୋଗାଡ କର ନା—ମୁଁ ବସୁଛି ।"

"ତା ହେଲେ ଆପଣ ଥାନ୍ତୁ, ମୁଁ ଟିକିଏ ଆସେ ।"

"ଆସିବା ତମର ଡେରି ହେବ ବୋଧହୁଏ ?"

"ହଁ, ଘଣ୍ଟାଏ ଖଣ୍ଡେ ଡେ଼ର ହେବ ।"

"ଯ୍ବା ମଧ୍ୟରେ ମୁଁ ତାହେଲେ ବେଙ୍ଗଲରୁ ବୁଲି ଆସେ ।"

"ହଜ ଆସନ୍ତୁ ।"

ରାଜକିଶୋର ଉଠିଗଲେ, ହେମ ମଧ୍ୟ ତାଙ୍କ ପଛେ ପଛେ ଦ୍ୱାରରେ ତାଲା ବନ୍ଦକରି ବଡ଼ ଦାଣ୍ଡକୁ ଓହ୍ଲାଇ ପଡ଼ିଲା ।

ପ୍ରାୟ ଦେଢ଼ ଘଣ୍ଟା ପରେ ଅନ୍ୟ ତିନି ଜଣ ଗାୟିକା ଆସି ପହଞ୍ଚିଗଲେ । ଯଥାରୀତି ନାଚ ଗାନ ହେଲା । ରାଜକିଶୋର ପକେଟରୁ ପାଞ୍ଚ ଟଙ୍କାର ଆଉ ଗୁଡ଼ିଏ ନୋଟ ବାହାର କରି ଗାୟିକାମାନଙ୍କୁ ବକସିସ୍ ଦେଲେ । ବାଈମାନେ ଟଙ୍କା ଗ୍ରହଣ କରି ବିଦାୟସୂଚକ ନମସ୍କାର କଲାବେଳେ ମାଳତୀକୁ ଚାହିଁ ଦେଇ ରାଜକିଶୋର ଚମକି ଉଠିଲେ । ତା ବେକରେ ଯାହା ଦେଖିଲେ, ସେଥିରେ ତାଙ୍କର ଛାତିଟା ଥରି ଉଠିଲା । ସେ କିନ୍ତୁ ବଡ଼ ସାବଧାନତାର ସହିତ ସେ ଭାବ ଗୋପନ ରଖି ହାସ୍ୟମୁଖରେ ସମସ୍ତଙ୍କୁ ବିଦାୟ ଦେଲେ । ତାଙ୍କର ମନଭିତରେ ସେତେବେଳେ ଯେ କିପରି ପ୍ରଳୟ ଝଞ୍ଜା ବହୁଥିଲା, ତା ସେହି ଏକା ଅନୁଭବ କରି ପାରୁଥିଲେ ।

ସେ ମାଳତୀ ବେକରେ ଯେଉଁ ସ୍ୱର୍ଣ୍ଣହାର ଦେଖିଲେ, ସେହିପରି ହାରଟି ଦିନେ କିଶୋରୀ ଗଳାରେ ଦେଖିଥିଲେ ଜଗନ୍ନାଥ ମଙ୍ଗରାଜଙ୍କ ଘରେ ।



## —ସପ୍ତମ ପରିଚ୍ଛେଦ—

ରାଜକିଶୋର ହେମଠାରୁ ବିଦାୟ ନେଇ ସେ ଦିନ କିପରି ଯେ ବସାରେ ପହଞ୍ଚିଲେ, ତା ସେ ଜାଣନ୍ତି ନାହିଁ । ଶୂନ୍ୟ ପଥରେ ଉଡ଼ାଇ ନେଇ ତାଙ୍କୁ ଯେପରି କିଏ ବସାରେ ପକାଇଦେଲା । ସର୍ବ ହେଉଜନ

ପୂର୍ବରୁ ଶେଷ ହୋଇଥିଲା । ସେ ବସାରେ ପହଞ୍ଚିବା ମାତ୍ରେ କବାଟରେ ଶିକୁଳି ଲଗାଇ ଦେଇ **ଖଟିଆ** ଉପରେ ପଡ଼ିଗଲେ । ଅବଶ ଶରୀରଟି ନିଶ୍ଚେଷ୍ଟ ଭାବରେ ବିଛଣାରେ ପଡ଼ି ରହିଲା ସତ; ମାତ୍ର ତାଙ୍କର ଅଦୌ ନିଦ୍ରାକର୍ଷଣ ହେଲା ନାହିଁ । ସେ ମନେ ମନେ କେତେ କଣ ଭାବି-ବାକୁ ଲଗିଲେ—

"କିଶୋରୀ କଣ ମାଳତୀର ଅଶ୍ରିତା ? ଏଇ ଦୁର୍ଦ୍ଦଶା ହେଲା ତାର ! ତାର ଏତେ ଶୀଘ୍ର ଏତେ ଦୂର ଅଧଃପତନ ହେଲା ! ଏତେ ବଡ଼ ଜଗତରେ ତାକୁ ସ୍ଥାନ ମିଳିଲା ନାହିଁ ଯେ, ସେ ଚୁଡ଼ଙ୍ଗ ସାହିରେ ବେଶ୍ୟାଘରେ ଆସି ରହିଲା ! ଜଗନ୍ନାଥ ମଙ୍ଗରାଜ ଖବରକାଗଜରେ ଯାହା ଲେଖିଥିଲେ 'ଖୁବ୍ ସମ୍ଭବ କୌଣସି ଦସ୍ୟୁଦଳ ଦ୍ୱାରା ସେ ଅପହୃତା' ସେ ସମସ୍ତ ତାହାହେଲେ ମିଥ୍ୟା ! କିଶୋରୀ ସ୍ୱେଚ୍ଛାକ୍ରମେ କୁଳତ୍ୟାଗିନୀ ହୋଇଛି ! କିଶୋରୀ—ସେ ଦିନର ସରଳପ୍ରାଣା କିଶୋରୀ—ତା ଅନ୍ତର ଏପରି କୁଟିଳତାରେ, କପଟତାରେ ଭରି ଥିଲା କିଏ ଜାଣେ ? ମୁଁ ତାର ଅନୁସନ୍ଧାନ କରିବା ଲାଗି ସ୍ଥିରସଙ୍କଳ୍ପ ହୋଇଛି—କିନ୍ତୁ ଲଭ କଣ ? ତାକୁ ମାଳତୀ ଘରେ ବାର-ବିଳାସିନୀ ବେଶରେ ଦେଖିବା ଅପେକ୍ଷା ବରଂ ନ ଦେଖିବା ଭଲ । ହାୟ କଳଙ୍କିନି କିଶୋରି, ତୁ ମାଳତୀ ଘରେ ରହିବା ପୂର୍ବରୁ ଜହର ଖାଇ ଦେଲୁ ନାହିଁ ! ଅମୂଲ୍ୟ ନାରୀତ୍ୱକୁ ପଣ୍ୟଦ୍ରବ୍ୟ ପରି ବଜାରରେ ଯାଚି ବସିଲୁ ! ବର୍ତ୍ତମାନ ମୁଁ ଯେତେଦୂର ଦୁଃଖିତ, ତୁ ମରି ଯାଇଥିଲେ କଦାପି ଏତେଦୂର ଦୁଃଖିତ ହୁଅନ୍ତି ନାହିଁ ।" ସହସା ରାଜକିଶୋରଙ୍କ ଛାତିଟା ଦାଉଁ ଦାଉଁ ହୋଇ ଉଠିଲା । କିଶୋରୀର ମୃତ୍ୟୁ ହୋଇ ନାହିଁ, ଏ କଥା କିଏ କହିବ ? ତାର ମୋତି-ମଣ୍ଡିତ ହାର ଯେତେବେଳେ ମାଳତୀ ପିନ୍ଧିଛି, ସେ ମୃତା କି ଜୀବିତା କିଏ କହିବ ସେ କଥା ? ଏପରି ହୋଇ ପାରିଥାଏ, କେହି ଦୁଷ୍ଟ ଲୋକ ତାକୁ କୁଶିକ୍ଷା ଦେଇ କୌଶଳ-

କ୍ରମେ ଘରୁ ବାହାର କରି ଆଣିଛି । ତା ଠାରେ ବହୁତ ଗୁଡ଼ିଏ ଅଳଙ୍କାର ଦେଖି ଧନଲୋଭରେ ତାକୁ ବିଜନରେ ମାରି ଦେଇଛି । ସେ ହାର ହାତକୁ ତିନି ହାତ ହୋଇ ଆଜି ମାଳତୀ ହାତରେ ବୋଧ-ହୁଏ ପଡ଼ିଛି କିମ୍ବା କେହି ତାକୁ ଟଙ୍କା ଲୋଭରେ ବେଶ୍ୟା ଘରେ ବିକ୍ରୟ କରି ଦେଇଛି । ସେ ନିଜର ଦୁରବସ୍ଥା ବୁଝିପାରି ବୋଧହୁଏ ଆତ୍ମହତ୍ୟା କରିଛି । ମାଳତୀ ଆଜି ସେହି ସୁଯୋଗରେ ତାର ମୋତି-ମଣ୍ଡିତ ହାରର ଉତ୍ତରାଧିକାରିଣୀ ।"

ରାଜକିଶୋର ପୁଣି ଭାବିଲେ—"ଯେଉଁ ହାରଟି ଦେଖି ମୁଁ ଏତେ-ଗୁଡ଼ାଏ ଦୁଶ୍ଚିନ୍ତାକୁ ମନରେ ସ୍ଥାନ ଦେଇଛି, ସେ ହାର ଯେ କିଶୋରୀର ତାର ପ୍ରମାଣ କଣ ? ସେପରି ହାର ଯେ ଆଉ କାହାରି ନାହିଁ ତାର ବା ପ୍ରମାଣ କଣ ? ଗୋଟିଏ ବଣିଆ ହାତର ଦୁଇଟି ଜାମ ଏକାପରି ଦିଶିବା ତ ଅସମ୍ଭବ ନୁହେଁ ।"

ରାଜକିଶୋର ଏହିପରି ବହୁତ ଚିନ୍ତା କଲେ; କିନ୍ତୁ କୌଣସି ପ୍ରକାର ସିଦ୍ଧାନ୍ତରେ ଉପନୀତ ହୋଇପାରିଲେ ନାହିଁ । ଉପଯୁକ୍ତ ପ୍ରମାଣ କିଛି ନ ମିଳୁଥିଲେ ସୁଦ୍ଧା ତାଙ୍କର ହୃଦୟଭିତରୁ କିଏ ଜଣେ କହି ଉଠୁଥିଲା—'ସେ ହାର ନିଶ୍ଚୟ କିଶୋରୀର ।'

ପରଦିନ ସନ୍ଧ୍ୟାରେ ରାଜକିଶୋର ଯେତେବେଳେ ହେମର ଦ୍ୱାରରେ ପହଞ୍ଚିଲେ, ହେମ ସେତେବେଳେ ପାନ ଡ଼ାଲାଟି ଆଗରେ ଥୋଇ ପାନ ଭାଙ୍ଗୁଥିଲା—ରାଜକିଶୋରଙ୍କୁ ଦେଖି ଠିଆ ହୋଇଗଲା । ଦରହାସ-ବୋଳା ବଧୂଳି ଅଧର କମ୍ପାଇ ସେ କହିଲା "ବସନ୍ତୁ ।" ରାଜକିଶୋର ଆସନ ଗ୍ରହଣ କଲେ ; କିନ୍ତୁ ପୂର୍ବଦିନ ପରି ହସ ହସ ମୁହଁରେ ସାଦରାଳାପ କଲେ ନାହିଁ । ପ୍ରଥମ ବନ୍ଧୁତା ସ୍ଥାପନ କରିବା ସମୟରେ ସାଧାରଣତଃ ଲୋକେ ଟିକିଏ ସଙ୍କୋଚ ବୋଧ କରିଥାନ୍ତି । ତାପରେ ଅଳ୍ପେ ଅଳ୍ପେ ସେ ସଙ୍କୋଚ ଅପସାରିତ

ହୋଇଯାଏ ବେଶୀ ଘନିଷ୍ଠତା ଆସିଗଲେ । ହେମ ବେଶ୍ୟା—ଚତୁର ସେ । ଗତକାଲି ରାଜକିଶୋରଙ୍କର ଯେପରି ସ୍ଫୂର୍ତ୍ତି ଓ ରସିକ-ପଣିଆ ଦେଖାଯାଇଥିଲା, ଆଜି ତାଠାରୁ ବେଶୀ ହେବାର କଥା ; କିନ୍ତୁ ଫଳରେ ଓଲଟା ଦେଖି ହେମ ବୁଝି ପାରିଲା ନିଶ୍ଚୟ ଏହାର କିଛି ବିଶେଷ କାରଣ ଅଛି । ସେ ରାଜକିଶୋରଙ୍କ ହାତକୁ ପାନ ବଢ଼ାଇ ଦେଇ କହିଲା "ଆଜି କାହିଁକି ଆପଣ ଶୁଖିଲଟା ଦିଶୁଛନ୍ତି ?" ରାଜକିଶୋର ଟିକିଏ ଇତସ୍ତତଃ କରି କହିଲେ, "ମୋର ଦେହଟା କାହିଁକି ଭଲ ଲାଗୁ ନାହିଁ । ବସାରେ ନିତାନ୍ତ ଖରାପ ବୋଧ ହେବାରୁ ତମ ପାଖକୁ ପଳାଇ ଆସିଲି ।" ହେମ ରାଜକିଶୋରଙ୍କର ମସ୍ତକ ଆଉଁସି ପକାଇ କହିଲା "ତା ହେଲେ ଶୋଇପଡ଼ ଟିକିଏ ।" ରାଜକିଶୋର ବାଧ୍ୟ ଶିଶୁଟି ପରି ଶୋଇ ପଡ଼ିଲେ । ପ୍ରାୟ ଦଶ ମିନିଟ ନୀରବରେ କଟିଗଲା । ରାଜକିଶୋର ଉଠି ବସିଲେ । କହିଲେ, "ହେମ, ବହୁତ ଗୁଡ଼ାଏ କାମ ବାକୀ ଅଛି—ମୁଁ ଆସୁଛି ।" ହେମ କିଛି ଉତ୍ତର କଲା ନାହିଁ । ରାଜକିଶୋର ଘରୁ ବାହାରି ଯିବାବେଳେ ହେମର ହାତଟି ଧରି ତା ମୁଠାଭିତରେ ଦୁଇଟି ଟଙ୍କା ଗୁଞ୍ଜି ଦେଇ ଚାଲିଗଲେ ।

ସେ ଦିନ ରାତିଟା ପାଇ ହେମ କେତେ କଣ ଭାବିଲା । ଦୁଇ ଦିନ ହେଲା ଯେଉଁ ନୂଆ ବାବୁଟି ଆସୁଛନ୍ତି, ତାଙ୍କପରି ଲୋକ ତ ସେ କେବେ ଦେଖି ନାହିଁ । ରସିକ ଯେମିତି ଗ୍ରାହକ ବି ସେମିତି । ବନ୍ଦୋବସ୍ତ ଅଫିସରେ କାମ କରୁଛନ୍ତି ବୋଲି କହୁଥିଲେ । ବନ୍ଦୋ-ବସ୍ତରେ ରହିଲେ ଖୁବ୍ ପଇସା ମିଳେ । ବାବୁଟିର ବୟସ ଅଳ୍ପ ହେଲେ କଣ ହେଲା ରୋଜଗାର ଏକା । ଆଜି ପାନ ଦିଗଣ୍ଡା ଖାଇଲେ ବୋଲି ଦୁଇଟା ଟଙ୍କା ଦେଇଗଲେ—କି ଅମୀର ମିଜାଜ୍ ।

ବେଶ୍ୟାର ଅନ୍ୟ ନାମ ରୂପାଜୀବା । କପଟ କୌଶଳରେ ରୂପ ବିକ୍ରୟ କରିବାକୁ ହିଁ ଏ ତା ସେମାନେ ବେଶ୍ ଜାଣନ୍ତି, ତାଙ୍କଠାରେ ସ୍ନେହ, ପ୍ରୀତି, ପ୍ରେମ, ଏ ସବୁର ଗନ୍ଧ ସୁଦ୍ଧା ନାହିଁ । ନାଗର-ମନଭୁଲା ସ୍ନେହାଦରର ଯେଉଁ ଅଭିନୟ କରନ୍ତି,ସେ ସବୁ ମିଥ୍ୟା, ସବୁ ଭଣ୍ଡାମି। ସେ କପଟ ଅଭିନୟ କେବଳ ଅର୍ଥଲୋଭରେ । ଅର୍ଥ ସେମାନଙ୍କ ନିକଟରେ ସବୁଠାରୁ ବଡ—ସ୍ୱର୍ଗୀୟ । ଅର୍ଥର ମୋହରେ ସେମାନେ ଯାବତୀୟ ଅସାଧ୍ୟ ସାଧନ କରିବାକୁ ସୁଦ୍ଧା କୁଣ୍ଠିତ ବା ପଶ୍ଚାତ୍‌ପଦ ନୁହନ୍ତି । କପଟ କୌଶଳରେ ଲୋକମାନଙ୍କର ମନ ଭୁଲାଇ ଅର୍ଥ ଉପାର୍ଜନ କରିବେ, ଦିନରାତି ସେମାନଙ୍କର ସେହି ଚିନ୍ତା ।

ହେମ ଯେତେବେଳେ ବୁଝି ପାରିଲା ବାବୁଟି ପ୍ରଚୁର ଅର୍ଥର ମାଲିକ, ଆନନ୍ଦର ତାର ସୀମା ରହିଲା ନାହିଁ । କପଟ ତାଙ୍କୁ ମାୟା-ଜାଲରେ ପକାଇ ତାଙ୍କର ଅର୍ଥତକ ଆତ୍ମସାତ୍ କରିବ, ସେହି ଚିନ୍ତା କରିବାକୁ ଲାଗିଲା । ସେ ସାରା ରାତି ସେହି ଅର୍ଥର ସ୍ୱପ୍ନ ଦେଖିବାକୁ ଲାଗିଲା । ରାତି ପାହିଲା; କିନ୍ତୁ ହେମର ସେ ଚିନ୍ତା ଶେଷ ହେଲା ନାହିଁ । ସେ ଅନ୍ୟାନ୍ୟ ଗୃହକର୍ମ କରୁଥିଲେ ସୁଦ୍ଧା ମନମଧ୍ୟରେ ସେହି ଅର୍ଥର ଚିନ୍ତା କରିବାକୁ ଲାଗିଲା ।

ସନ୍ଧ୍ୟା ହେବାକୁ ଅଳ୍ପମାତ୍ର ବିଳମ୍ବ ଅଛି । ରାଜକିଶୋର ହେମ ଘରେ ଉପସ୍ଥିତ ହେଲେ;ଅସମୟରେ ରାଜକିଶୋରଙ୍କୁ ନିକଟରେ ଦେଖି ହେମ ମନେ ମନେ ଆନନ୍ଦିତ ହୋଇ ଉଠିଲା । ଭାବିଲା—ଯାହାହେଉ ଆଉ ବେଶୀ ପରିଶ୍ରମ କରିବାକୁ ହେବ ନାହିଁ—ଶିକାର ବଳେ ବଳେ ଧରା ପଡ଼ିଲାଣି । ଟିକିଏ ଗର୍ବ ମଧ୍ୟ ଅନୁଭବ କଲା । ତାର ଗର୍ବ ଅନୁଭବ କରିବାର କଥା ଏତା । ରାଜକିଶୋରଙ୍କ ପରି ସୁଖଦର୍ଶନ ଯୁବକ ତାର ରୂପରେ ମୋହିତ, ଏହାଠାରୁ ବଳି ଗର୍ବର ଓ ଗୌରବର ବିଷୟ

ତା ପକ୍ଷରେ ଆଉ କଣ ଅଛି ? ଭଗବାନ ଏତେ ଦିନ ପରେ ହେମପ୍ରତି ସଦୟ ହୋଇଛନ୍ତି । ରାଜକିଶୋରଙ୍କ ସାହାଯ୍ୟରେ ଅଚିରେ ତା ଭାଗ୍ୟର ପରିବର୍ତ୍ତନ ଘଟିବ ।

ହେମ ମାଦକଭରା ହସଟାଏ ହସି କହିଲା "ଏ ଅବେଳାରେ କିପରି ଅନୁଗ୍ରହ ହୋଇଗଲାମ ?" ରାଜକିଶୋର ତାର ହାତଟି ଧରି ପକାଇ ଆଦର କରି କହିଲେ "ହେମ ବାଈଙ୍କର ଅନୁଗ୍ରହ ପାଇବା ଲାଗି । ମୁଁ ବଡ ଆଶ୍ଚର୍ଯ୍ୟ ହେଉଛି, ଦିନ ଦୁଇଟା ଭିତରେ ତମେ କଣ ଜାଦୁ କରିଦେଲ ଯେ, ଘରେ କଣ ଅଫିସରେ କଣ, କେଉଁଠାରେ ଆଉ ମନ ଲାଗୁ ନାହିଁ ।" ହେମ ନାସିକା ପୁଡା ଫୁଲାଇ କପଟ ଅଭିମାନ କରି କହିଲା, "ହଁ, ସେ ମନ-ଭୁଲାଣିଆ କଥାରେ ଭୁଲିଯିବି—ମୁଁ ପିଲା ହୋଇ ନାହିଁ ।" ରାଜକିଶୋର ଶଠ ପଣରେ ତା ଠାରୁ ଆଉ ପାହାରେ ଉପରକୁ ଉଠିଗଲେ । ହେମର ସେହି କଥା ଦୁଇ ପଦରେ ତାଙ୍କର ଦେହ ଯେପରି ପ୍ରାଣଶୂନ୍ୟ ହୋଇଗଲା—ମୁହଁର ରଙ୍ଗ ବଦଳିଗଲା । ହୃଦୟରେ ଅସହ୍ୟ ବେଦନା ଅନୁଭବ କରୁଥିବାର ଅଭିନୟ କରି ଅତି କ୍ଷୀଣ ଏବଂ କମ୍ପିତ କଣ୍ଠରେ କହିଲେ, "ହେମ, ତମଠାରୁ ଏପରି କଥା ଶୁଣିବି ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ମୋର ଭାଗ୍ୟ ଏଡ଼େ ଖରାପ ଯେ ଯାହାକୁ ନିଜର ବୋଲି ଭାବୁଛି ସେ ମୋତେ ସାତ ପର କରୁଛି । କି ଦୁର୍ଯୋଗ···।" ହେମ ବାଧା ଦେଇ କହିଲା "ହଁ, କାଲି କଣ ମୁଁ ଜାଣି ନାହିଁ ? ପଅର ଦିନ କଥାକୁ କାଲି କଥା ତମେ ନିଜେ ଭାବିଲ ଦେଖି । ମୋ ହାତରେ ଟଙ୍କା ଦିଟା ଗୁଞ୍ଜିଦେଇ ଯେତେବେଳେ ଚାଲିଗଲ, ଭାବିଲି, ସେ ଟଙ୍କାକୁ ତମର ଆଗରେ ଫିଙ୍ଗି ଦେବି—କାଳେ ତମ ମନରେ କଷ୍ଟ ହେବ···। ତମେ ଭାବୁଥିବ ବେଶ୍ୟା-ଜାତି ଅର୍ଥପ୍ରିୟ—ତାଙ୍କର ଅର୍ଥ ପାଇଲେ ହେଲା; କିନ୍ତୁ ପରମେଶ୍ୱର

ଜାଣନ୍ତି ଭାଲ୍ ମୋ ମନ ଯାହା ହୋଇଛି । ଗୃହରେ ଚୁଲିକ ଲୁଣ୍ଠା ଯାଇଛି ମୋର ? ସ୍ନେହ, ଆଦର ଠାରୁ ଟଙ୍କା କଣ ବଡ ? ଟଙ୍କା ପଇସାରେ ପ୍ରେମ କଣ କିଣା ହୁଏ ? ହେଲେ ବି ସେ କଣ ବେଶୀ ଦିନ ରହେ ?"

"ମୋତେ ଆଜ ସେ ସବୁ ବୁଝାଇବାକୁ ହେବ ନାହିଁ । ବିଶେଷତଃ ତମକୁ ମୁଁ ଭଲକରି ଚିହ୍ନିଛି । ଲୋକର ମୁହଁକୁ ଗୃହିଁ-ଦେଲେ ମୁଁ ତାର ପେଟ ଭିତର ଦେଖିପାରେ । ତା ନ ହେଲେ ସହରରେ କେତେ ଲୋକ ନାହାନ୍ତି—ତମ ପାଖକୁ ଆସିଲି କାହିଁକି ? ମୁଁ ରୂପ ଗୃହେଁ ନା—ଗୃହେଁ ଗୁଣ । ତମକୁ ଯେ ଏତେ ଦିନପରେ ପାଇଛି, ସେ ମୋର ଭାଗ୍ୟ ବୋଲି କହିବାକୁ ହେବ ।"

"ଅଜ ତେବେ ? କହନ୍ତି ପରି ପୁରୁଷ ଭଅଁର ଜାତ । ବିଶ୍ୱାସ ନାହିଁ ତମକୁ ।"

"କାହିଁକି ? ମୋ କଥାରେ ତମର ବିଶ୍ୱାସ ହେଉ ନାହିଁ ?"

"କେମିତି ବିଶ୍ୱାସ ହେବ ? ତମେ ସତ କହିଲ—କାଲି ଆସିଲ କି ନାହିଁ, କଥା ନାହିଁ ବାର୍ତ୍ତା ନାହିଁ ସଙ୍ଗେ ସଙ୍ଗେ ଗୃଲିଗଲ । କାହିଁକି ? ମନଟା ବଡ ଉଣା ଦିଶୁଥିଲା । ଆଜି ବି ଦିଶୁଛ ସେଇ ରକମ—କାରଣ କଣ ?" ରାଜକିଶୋର ଗୋଟିଏ ଦୀର୍ଘ ନିଶ୍ୱାସ ତ୍ୟାଗ କଲେ—କିଛି କହିଲେ ନାହିଁ । ହେମ ରାଜକିଶୋରଙ୍କ କୋଳରେ ବସି ପଡିଲା । ଡାହାଣ ହାତରେ ତାଙ୍କର ଚିବୁକ ଧରି ସୋହାଗ-ଭରେ କହିଲା, "ତମକୁ ମୋ ରାଣ, ସତ କୁହ । ତମର ଏ ବିରସ ମୁହଁ ଦେଖି ମୋତେ ବଡ଼ କଷ୍ଟ ଲାଗୁଛି ।" ରାଜକିଶୋର ଆଜ ଗୋଟିଏ ବେଦନାଭରା ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲେ "ହେମ, ତମ ଯାଗରେ ମିଛ କହିବାକୁ ମୋର ଜିଭ ଲେଉଟୁ ନାହିଁ । କାହିଁକି—

ସବୁ ସତ କଥା କହିବ । କିନ୍ତୁ ସେ ବହୁତ କଥା ।” କହୁ କହୁ ପକେଟରୁ ଗୋଟିଏ ସୁନାର ସୁନ୍ଦର ହାର ବାହାର କରି ହେମ ହାତକୁ ବଢ଼ାଇଦେଲେ । କହିଲେ—‘ଦେଖିଲ ଏ ହାରଟି ।’

“ବାଃ, ବଡ଼ ସୁନ୍ଦର ହାର । କାହାର ଏ ?”

“ତମେ ଦେଖନା ପସନ୍ଦ ହେଉଛି କି ନାହିଁ ।”

“ପସନ୍ଦ ହେବ ନାହିଁ କାହିଁକି ? ବଡ଼ ଚମତ୍କାର ହୋଇଛି । ଦାମ୍ କେତେ ସାର ?”

ରାଜକିଶୋର ସେ ହାରଟି ନେଇ ହେମର ଗଳାରେ ଲମ୍ବାଇ-ଦେଲେ । ହେମ ନିର୍ବାକ୍ ବିସ୍ମୟରେ ତାଙ୍କର ମୁହଁକୁ ଦଣ୍ଡେ କାଳ ଚାହିଁ ରହିଲା । ତାପରେ କହିଲା “ଏ କଅଣ ସ ? ମୁଁ କିଛି ବୁଝିପାରୁ ନାହିଁ ।”

“କହୁଛି ପରା ବହୁତ କଥା । ଏତେ ଚଞ୍ଚଳ କିପରି ବୁଝିପାରିବ ?”

ହେମକୁ ଅତ୍ଯନ୍ତ ଆଶ୍ଚର୍ଯ୍ୟ ବୋଧ ହେଲା । ସେ ବିସ୍ମୟାନ୍ୱିତ ଭାବରେ କହିଲା “ଆଜ୍ଞା, କଣ କହିଲ ସବୁ କଥା । ତମର ମନ-ଦୁଃଖର କାରଣ କଣ ?”

“ଏ ହାରଟି ହେଉଛି ମୂଳ କାରଣ ।”

“କାହିଁକି ?”

“ଅଳ୍ପକ ପନ୍ଦର ଦିନ ତଳେ ମୋର ସ୍ତ୍ରୀ ତାଙ୍କ ପାଇଁ ଗୋଟିଏ ଭଲ ହାର କିଣିବାକୁ କହିଲେ । ଦକ୍ଷିଣରେ ଭଲ ସୁନା ମିଳେ ବୋଲି ମୁଁ ବିଜୟନଗର ଯାଇ ପାଞ୍ଚଶ ଟଙ୍କାରେ ଏ ହାରଟି ଆଣିଲି । ହାର ଆଣିବାର ଅଳ୍ପକ ଚାରିଦିନ ହେଲା । ସ୍ତ୍ରୀଙ୍କର କିନ୍ତୁ ଏ ହାର ଆଦୌ ପସନ୍ଦ ହେଉ ନାହିଁ ।”

"ଏ ହାର ପସନ୍ଦ ହେଉ ନାହିଁ ? ବଡ଼ ଆଶ୍ଚର୍ଯ୍ୟ କଥା ତ । ଅଚ୍ଛା, ଏ ହାର ପସନ୍ଦ ନ ହେବାର କାରଣ କଣ ? କଣ କହୁଛନ୍ତି ସେ ?"

"ସେ କହନ୍ତି ଯେ, ବୃନ୍ଦାଙ୍କ ସାହାରେ ଗୋଟିଏ ସ୍ତ୍ରୀ ବେକରେ ସେ ଗୋଟିଏ ହାର ଦେଖିଛନ୍ତି । ସେ ହାରଟି କେଉଁଠି ଭାରି ସୁନ୍ଦର । ସେହିପରି ହାରଟି ଦେଲେ ତାଙ୍କର ଯାଇ ପସନ୍ଦ ହେବ । ସେଥିଲାଗି ଦୁଇଦିନ ହେବ ଘରେ କଳଗୋଳର ଧୂମ ଜଳୁଛି । ଆଜି ଦିନଯାକ ମୁଁ କିଛି ଖାଇ ନାହିଁ ପରା ।"

"ଆହା, ସେଇଥିପାଇଁ ତ ମୁହଁ କାନ ଶୁଖି ଯାଇଛି । ସ୍ୱାମୀ ଦିନମାନ ଖାଇ ନାହାନ୍ତି—ଏ କଥା ତାଙ୍କ ଦେହ ସହୁଛି କେମିତି ମ ?"

"ହେମ, କହନା ସେ କଥା । ସେ ସ୍ତ୍ରୀ ଲାଗି ମାସରେ ପନ୍ଦର ଦିନ ମୋତେ ଏକାଦଶୀ କରିବାକୁ ପଡ଼ୁଛି ।"

"କଥାରେ କହନ୍ତି 'ସ୍ତ୍ରୀ ନାଶହୁଏ ହାଟକୁ ଯାଇ, ପୁରୁଷ ନାଶ ହୁଏ ଓପାସ ଶୋଇ ।' ତମେ ପୁରୁଷ ପୁଅ । ମାଇପଙ୍କ କଥାରେ ଏତେ ଛଳ କରୁଛ କାହିଁକି ? ଓପାସ ଶୋଇବା ଅପଣାକୁ ହାନି ସିନା ।"

"କଣ କରିବି ? ଇଚ୍ଛା କରି କଣ ମୁଁ ଉପବାସ ରହୁଛି ?"

"ସେଭଳି କଥା ମାଇକିଅଙ୍କ ମୁହଁକୁ ମାନେ । ସ୍ତ୍ରୀ ଗୋଟାକୁ ଯେ ଜବଦ କରି ନ ପାରେ, ସେ କି ମଣିଷ ?"

"ତମେ ବୁଝି ପାରୁନା । ଇଚ୍ଛା କଲେ ମାଡ଼ରେ ହାଡ଼ଗୋଡ଼ ଭାଙ୍ଗି ଦିଅନ୍ତି—ସେ କଣ ଭଲ ହେବ ? ଆମେ ଜଣେ କର୍ମଗୃହସ୍ଥ । ଭଦ୍ର ସମାଜରେ ନାମ ଲେଖାଇଛୁଁ । ଦାଣ୍ଡ ଲୋକ ଶୁଣି କଣ କହିବେ ?"

"ହଁ, ସତ କଥା, ଅଚ୍ଛା ତମେ ଏ ହାରଟି ମୋ ବେକରେ କାହିଁକି ଦେଲ ଭଲା ? ବେଶୀ ଅଶାନ୍ତି କଳଗୋଳ ହେବ ସିନା ।"

"ନା, ସେ ପରା ଏ ହାର ପିନ୍ଧିବେ ନାହିଁ ବୋଲି ପ୍ରତିଜ୍ଞା କରିଛନ୍ତି ।"

"ତେବେ ତାଙ୍କର ଇଚ୍ଛା ଯେମିତ, ସେମିତ ହାରଟିଏ ଗଢ଼ାଇ-ଦେଲେ ତ ସବୁ ଅଡୁଆ ତୁଟିଯାନ୍ତା । ସେ ହାର ଏମିତ କେତେ ଦାମ୍ ହେବ କି ?"

"ଦାମ୍ ସାଙ୍ଗରେ କିଛି ଯାଏ ଆସେ ନାହିଁ । ଦଶ ହଜାର ପଡିଲେ ବି ମୋତେ ଭଗବାନ ସେ ବିଷୟରେ ଊଣା କରି ନାହାନ୍ତି ।"

"ତେବେ ଦେଇନା ତାହାଙ୍କୁ ? ଏତେ ଛୋଟ ଓପାସରେ ନିଜ ଦେହକୁ କଷ୍ଟ ଦେଉଚ ?"

"କଣ କରିବି ? ଚୂଡଙ୍ଗ ସାହରେ ସେ ସ୍ତ୍ରୀଲୋକ କେଉଁଠି ମୁଁ କେଉଁଠି ? ତା ବେକରେ ଅଛି ହାର—ସେହିପରି ହାରଟି ଭଲ ମୁଁ ଗଢ଼ାଇବି କପରି ?"

"ଆଚ୍ଛା, ସେ ସ୍ତ୍ରୀଲୋକର ପରିଚୟ ଜାଣ ?"

"ବିଶେଷ ପରିଚୟ ଜାଣେ ନା । ତେବେ ତାଙ୍କଠାରୁ ଏତିକି ଶୁଣିଛି—ବଡ ଦାଣ୍ଡରୁ ଚୂଡଙ୍ଗ ସାହିକୁ ଗଲାବେଳେ ଠିକ୍ ମୋଡ଼ ଉପରେ ବାଁ ପାଖକୁ ତାର ଘର ।"

"ତା ହେଲେ ସେ ତ ମାଳତୀ । ମାଳତୀ ଘର ତ ସେହି ମୋଡ଼ ଉପରେ ବାଁ ପାଖକୁ । ସେଠି ତ ଆଉ କାହାର ଘର ନାହିଁ ।"

"ତମେ ତାହାହେଲେ ଚିହ୍ନ ତାକୁ ?"

"ମାଳତୀକୁ ଚିହ୍ନି ନାହିଁ ? ମୋ ସଙ୍ଗାତ ଯେ ! ସେ ପରା ପଅର ଦିନ ଆସିଥିଲା ଇଠିକି ।"

"ଟିକିଏ କଷ୍ଟ କରନ୍ତୁ ମୋପାଇଁ ତାହାହେଲେ । ବଡ଼ ଉପକାର କରନ୍ତୁ ଏକା । ବଞ୍ଚିଯାନ୍ତି ପରା ମୁଁ ।"

"ଏଥିରେ ଗୋଟାଏ କଷ୍ଟ କଥା କଣ ଅଛି ? ମୁଁ ଆଜି ବୁଝି ଦେଉଛି ।"

"ହେମ ! ଶୁଣ ଅଛୁ ମୋତେ, ଯଦି ତମେ ଏତିକି ଉପ-କାର କରିବ, କଣ କହିବି ·····ଶରଦିନ ମୁଁ ତମର କିଣା ହୋଇ ରହିବି । ଗୋଟାଏ କାହିଁକି ଯୋଡାଏ ସେହିପରି ହାର ଗଢ଼ାଇବି । ଗୋଟାଏ ତାଙ୍କର, ଆଉ ଗୋଟାଏ ତମର ।"

"ନାହିଁ, ମୋର ଦରକାର ନାହିଁ । ମୁଁ ମଜୁରି ନେବି ନାହିଁ କି ବୁଝିପାରିବି ନାହିଁ ।"

"ଛି, ତମେ ବଡ଼ ଅଭିମାନିନୀ । ମୁଁ କଣ କହିଲି ମଜୁରି ଦେବାକୁ ?"

"ମଜୁରି ନୁହେଁ ତ ମୋପାଇଁ ପୁଣି ଗୋଟାଏ ହାର ଗଢ଼ାଇବ କାହିଁକି ?"

"ସେ ପରା ବଡ଼ ସୁନ୍ଦର ହାର । ତମପରି ସୁନ୍ଦରୀ······"

"ଥାଉ ଥାଉ, ଏତେ ପ୍ରଶଂସା ଲୋଡ଼ା ନାହିଁ ମୋର । ତମେ ବସିଥାଅ—ମୁଁ ଯାଉଛି ଅବିକା ବୁଲି ଆସିବି ।"

"ଆଚ୍ଛା, ମାଳତୀ ପଅର ଦିନ ଆସିଥିଲା ବୋଲି କହୁଛ ପରା—କିଏ ସେ କହିଲ ?"

"ସେଇ ଯେ ତମର ପାଖକୁ ଲଗି ବସିଥିଲା ।"

"ଆଜି ବି ସେମାନଙ୍କୁ ଡ଼କାଅ—ନାଚ ଗାନ ହେବ । ଏଇଠାରେ ବୁଝିନେବି ।"

"ହଉ, ତମର ଯେମିତି ଇଚ୍ଛା ।"

"ନିଅ ହାରକୁ ରଖ, ମୁଁ ଯାଉଛି ଷ୍ଟେସନ ଆଡେ ବୁଲିଆସେ; ଜଣେ ବନ୍ଧୁଙ୍କର ଆଜି ସଞ୍ଜ ପାସେଞ୍ଜରରେ ଆସିବାର ଅଛି ।"

ବ୍ରଜକିଶୋର ପକେଟରୁ ଦଶଟଙ୍କିଆ ନୋଟ ଖଣ୍ଡିଏ ବାହାର କରି ହେମ ଆଗରେ ଥୋଇଦେଲେ । ହେମ ସେ ନୋଟଖଣ୍ଡି ବ୍ରଜକିଶୋରଙ୍କ ଉପରକୁ ଫିଙ୍ଗି ଦେଇ କହିଲା "ଏ କଣ ମ ? ଏବୁ ଦିନେ ଗୋଟାଏ ଢଙ୍ଗ ବାହାରୁଛି ।"

ରାଜକିଶୋର ଜୋର କରି ହେମ ହାତରେ ସେ ଖଣ୍ଡିକ ଗୁଞ୍ଜି ଦେଇ କହିଲେ "ଛି, ହେମ ! ତୁମେ ବଡ଼ ଅବୁଝା, ଏ ପରି ମୋର ସ୍ନେହର ଦାମ୍—ରଖିବ ନାହିଁ ?" ହେମ ଆଉ ପ୍ରତିବାଦ କଲା ନାହିଁ। ରାଜକିଶୋର ଉଠି ଚାଲିଗଲେ।



## —ଅଷ୍ଟମ ପରିଚ୍ଛେଦ—

ସଙ୍ଗାତର ଡାକରିରେ ମାଳତୀ ଅନ୍ୟାନ୍ୟ ସହଚରୀମାନଙ୍କ ସହ ଯଥାସମୟରେ ଆସି ଉପସ୍ଥିତ ହେଲା । ରାଜକିଶୋର ସେପର୍ଯ୍ୟନ୍ତ ଫେରି ନଥିଲେ । ଦୁଇ ସଙ୍ଗାତ ଏକାନ୍ତରେ ବସି ଦୁଃଖ ସୁଖ ହେଲେ । ହେମ ମନେ ମନେ ମାଳତୀର ଗଳାକୁ ଲକ୍ଷ୍ୟ କରୁଥାଏ । କିନ୍ତୁ ମାଳତୀର ଗଳଦେଶ ବସ୍ତ୍ରାବୃତ ଥିବାରୁ ବହୁ ଚେଷ୍ଟା କରି ସୁଦ୍ଧା ସେ କିଛି ଦେଖିପାରିଲା ନାହିଁ । ବସ୍ତ୍ରାବରଣ ଭେଦ କରି କେବଳ ଗୋଟାଏ ଜ୍ୟୋତି ବାହାରୁଥିବାର ଲକ୍ଷ୍ୟ କଲା । କହିଲା,"ସଙ୍ଗାତ, ତମ ଗ୍ରୀବା ଉପରେ ଚକ୍ ଚକ୍ ଦିଶୁଛି କଣ ସେ ?" ମାଳତୀ ତାର ବକ୍ଷ ବସ୍ତ୍ର ଈଷତ୍ ଉନ୍ମୋଚନ କରି ମୁକ୍ତାରାଜି-ଖଚିତ ସୁରମ୍ୟ ସ୍ୱର୍ଣ୍ଣ-ହାରଟି ଦେଖାଇ କହିଲା, "ଏ ହାରରେ ମୋତି ଅଛି ଯେ, ସେଇ ଚକ୍ ଚକ୍ ଦିଶୁଛି ।" ହେମ ସେ ହାରଟି ନିଜ ହାତରେ ପରୀକ୍ଷା କରି ଦେଖିଲା । କହିଲା,"ବଡ଼ ସୁନ୍ଦର ହାର ଏଟା । କେଉଁଠି ଏ ହାର ତିଆରି କରାଇଥିଲ ? ଦାମ୍ କେତେ ?" ମାଳତୀ ଉଚ୍ଚ ହାସ୍ୟ କରି କହିଲା, "କୋଡ଼ିଏ ଟଙ୍କା !" ହେମ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ଭାବରେ ପ୍ରଶ୍ନ କଲା, "କୋଡ଼ିଏ ଟଙ୍କା ? ସୁନାଟି ଏ ?" "ପରଖୁନା—ଅସଲ୍ ଏକ ନମ୍ବର ସୁନା କି !"

"ଏ ପାଞ୍ଚ ହାତ ଭର ହେବ କି ନଣ—କୋଡ଼ିଏ ଟଙ୍କା ସ୍ତାର ଦାମ୍ କେମିତ ହେଲନ ? କଣିଥିଲ ନା ଗଢ଼ାଇଥିଲ ?"

"କଣିଥିଲ ।"

"କେବେ ?"

"ମାସେ ହେବ ।"

"କଣ କହୁଛମ, ମୁଁ ତ ବାବା ହେଲଣି ତମ କଥା ଶୁଣି ! ସ୍ତରଶ କି ପାଞ୍ଚଶ ଟଙ୍କାର ହାର, ତମେ କୋଡ଼ିଏ ଟଙ୍କାରେ କେମିତ କଣିଲ ?"

"ମୁଁ କଣ ମିଛ କହୁଛି ? ମୋ ରାଣ ସଙ୍ଗାତ,କୋଡିଏ ଟଙ୍କାରେ କଣିଛ ପର ।"

"ଏମିତକା ହାର ମୋତେ ଗୋଟାଏ ଦେଲ—ମୁଁ ଗୃଲଶ ଟଙ୍କା ଦେବି ।"

ମାଳତୀ ହସି ହସି ହେମକୁ କୁଣ୍ଢାଇ ପକାଇଲା । କହିଲା "ଏ ହାର ସ୍ତରଶ ପାଞ୍ଚଶ କଣ କହୁଚମ—ଅହୁର ବେଶୀ ହେବ । ସତରେ ମୁଁ ଏକା କୋଡ଼ିଏ ଟଙ୍କାରେ କଣିଛି । କେମିତ କହିବ ? ମୋହନ ଦାସକୁ ଚିହ୍ନିଚ ? ମାର୍କଣ୍ଡେଶ୍ୱର ସାହିରେ ତା ଘର, ସେ ଗୁଲିଅଟା ମ, ଗୁଲି-ଖିଆରେ ସବୁ ସମ୍ପତ୍ତି ବାଡ଼ି ବଳ ସାରିଲଣି ପର । ଏବେ ଦାଣ୍ଡରେ ଭିଖ ମାଗି ବୁଲୁଛି ।"

"ହଁ, ମୁଁ ଜାଣେ ତାକୁ ।"

"ସେଇ ମୋତେ ଏ ହାରଟି କୋଡିଏ ଟଙ୍କାରେ ଦେଇଛି । ମୁଁ ତାକୁ ପଗ୍ଭରିବାରୁ କହିଲା,କେଉଁ ରାଜାଙ୍କର ରାଣୀ ତାକୁ ଦେଇଥିଲେ ।"

"ସେ ଯଦ ଗ୍ରେରମାଲ ହୋଇଥାଏ ?"

"ମୋର ତ ସେହିପର ସନ୍ଦେହ ହେଉଛି ।"

"ଜାଣି ଶୁଣି ହାରଟି ରଖିଲ, ଯଦ ହାନ ଲଭ କଛି ହୁଏ ?"

"ମୁଁ କଣ କାଇଦା ନ କରି ଯାଉଛି ? ତାଠାରୁ ଖଣ୍ଡେ କାଗ-ଜରେ ଲେଖି ନେଇଛି—ସାକ୍ଷୀ ମଧ୍ୟ ଅଛନ୍ତି ।"

"ବେଶ୍ ବୁଦ୍ଧିମାନର କାମ କରିଛ । ନ ହେଲେ ଆଜିକାଲି ସମୟ ଯେମିତି......"

ସେହି ସମୟରେ ରାଜକିଶୋର ଆସି ପହଞ୍ଚିଗଲେ । ହେମ ତାଙ୍କର ଅଭ୍ୟର୍ଥନା କରିବାରେ ଲାଗିଗଲା । ହାର ବିଷୟରେ ଆଉ କିଛି ଆଲୋଚନା ହୋଇପାରିଲା ନାହିଁ ।

ନାଚଗାନ ପରେ ରାଜକିଶୋର ହେମଠାରୁ ସେ ହାରର ଇତିହାସ ଶୁଣିଲେ । ମୋହନ ଦାସ କେଉଁଏ ଟଙ୍କା ମୂଲ୍ୟରେ ମାଲ-ତୀକୁ ହାରଟି ବିକ୍ରୟ କରିଥିବାର ଶୁଣି ସେ ଚମକି ଉଠିଲେ । ସହସା ତାଙ୍କର ମୁଖମଣ୍ଡଳ ବିବର୍ଣ୍ଣ ହୋଇଗଲା । ମୋହନ ଦାସକୁ ସେ ପୂର୍ବରୁ ଚିହ୍ନନ୍ତି । ମଧୁ ପଣ୍ଡିଆରି ଘର ଡକାୟତି ସଂପର୍କରେ ତାକୁ ସନ୍ଦେହ କରୁଛନ୍ତି । ସେ ପୁଣି ଏ ହାରଟିକୁ ମାଲତୀକୁ ବିକ୍ରୟ କରିଛି । ଆଉ ଏକ ସନ୍ଦେହ ତାଙ୍କୁ ବିଚଳିତ କରି ପକାଇଲା ! ସେ ଭାବିଲେ --କିଶୋରୀ ତାହେଲେ ଜୀବନରେ ନାହିଁ । ମୋହନ ଦାସ ଓ ତାର ସହଚରମାନେ ତାର ଅଳଙ୍କାର ସବୁ ଛଡାଇନେଇ ତାକୁ ବୋଧହୁଏ ମାରି ପକାଇଛନ୍ତି । ସେ ଆଉ ଭାବିପାରିଲେ ନାହିଁ—ଶୋକରେ ତାଙ୍କର ପ୍ରାଣ ନିତାନ୍ତ ଅଧୀର ହୋଇ ଉଠିଲା । କିନ୍ତୁ ସେ ଜୋର କରି ମନକୁ ସ୍ୱାଭାବିକ ଅବସ୍ଥାକୁ ଆଣି ହୃଦୟର ଗୁରୁ ବେଦନା ଗୋପନ ରଖିବାକୁ ଯଥାସାଧ୍ୟ ଚେଷ୍ଟାକଲେ । ହେମ କମ୍ ଧୂର୍ତ୍ତା ନୁହେଁ; ତା ଆଗରେ ରାଜକିଶୋରଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା । ସେ ତାଙ୍କର ସହସା ପରିବର୍ତ୍ତନ ଲକ୍ଷ୍ୟ କରି ପଚାରିଲା, "ତମ ମୁହଁଟା ଏପରି ଶୁଖିଗଲା କାହିଁକି ?" ପ୍ରତ୍ୟୁତ୍ପନ୍ନମତି ରାଜକିଶୋର 'ଶରୀ-

ଶାଠ୍ୟଂ ସମାଚରେତ୍' ନୀତିରେ କହିଲେ, "ମାଳତୀଠାରୁ ବୁଝି ହାରଟି ଫିଅରି କରାଇବି ବୋଲି ଯେଉଁ ଆଶା କରି ବସିଥିଲି, ଦେଖୁଛି ସେ ଆଶା ଦୁରାଶା ମାତ୍ର ! କିନ୍ତୁ ହାର ନ ଦେବାଯାଏ ମୋର ଯେ ରକ୍ଷା ନାହିଁ—ଦିନକୁ ଦିନ ଅଶାନ୍ତି ବରଂ ବଢ଼ିବ । କଣ କରିବି କିଛି ସ୍ଥିର କରିପାରୁ ନାହିଁ ।"

"କାହିଁକିମ ଏତେ ଭାବନା ? ଆଜି ରାତି ବେଶୀ ହୋଇଗଲାଣି, ନଇଲେ ଅବିକା ବୁଝି ଦିଅନ୍ତି । ମୋହନ ଦାସ ତ ବାଲିତର ଲୋକ ନୁହେଁ । ମାର୍କଣ୍ଡେଶ୍ୱର ସାହିରେ ତା ଘର—କାଲି ତାକୁ ଡ଼ାକିଆଣି ସବୁ କଥା ବୁଝିଦେବି ।"

"ସେ ଯଦି ନ କହେ ?"

" ନ କହିବ ? କାହିଁକି ନ କହିବ ?"

"ତା ଉପରେ ତମର କି ଅଧିକାର ଅଛି ? ଭାବରେ ପଗ୍ଗୁରି-ବାର କଥା,ସିନା !, ସେ ନ କହିଲେ—"

"ହଁ, ହଁ, ତା ଠିକ୍; କିନ୍ତୁ ସେ ମୋ ପାଖରେ କହିବ ନିଶ୍ଚୟ । ତା ସଙ୍ଗରେ ମୋର ଆଗରୁ ପରିଚୟ ଅଛି । ସେ ଅନେକ ସମୟରେ ଏଠାକୁ ଆସେ ଯେ । କାଲି ତ ଆସିଥିଲା, ଯେମିତି ହେଉ ମୁଁ କାଲିକି ତାଠାରୁ ବୁଝି ତମକୁ କହିବି ।"

"ସତ କହୁଛ ?"

"ତମର ଯଦି ଏତେ ଅବିଶ୍ୱାସ, କାଲି ତମରି ଆଗରେ ତାଠାରୁ କଥା ଆଦାୟ କରିବି । ନିଜ କାନରେ ଶୁଣିଲେ ତ ଆଉ ଅବିଶ୍ୱାସ କରିବ ନାହିଁ ?"

"ତମ କଥାରେ ଅବିଶ୍ୱାସ କରୁ ନାହିଁ ମୁଁ ତ । ତମେ ଜାଣି-ପାରୁଛ ମୋର ଅବସ୍ଥା, ଯେତେ ଶୀଘ୍ର ହାରଟି ହୁଏ ମଙ୍ଗଳ ।"

"ମୁଁ ତ କହୁଚି କାଲି ଅସ, ତମର ଅଗରେ ତାକୁ ପଗ୍ଗୁର ବୁଝିଦେବ ।"

"କେତେବେଳେ ଅସିବି ତା ହେଲେ ?"

"ଏତିକି ବେଳକୁ ଅସ ।"

"ଅଚ୍ଛା, ମୋ ସାମନାରେ ସେ ଯଦି କହିବାକୁ କୁଣ୍ଠିତ ହୁଏ—ନ କହେ ?"

"ନା, ସେ କହିବ, ନ ହେଲେ ଏବେ ତମେ ଠିକ୍ଏ ଲୁଚିଯିବ ।"

ରାଜକିଶୋର ଧନ୍ୟବାଦ ସହ ଗୋଟିଏ ପାଞ୍ଚଟଙ୍କିଆ ନୋଟ ହେମର ଅନିଚ୍ଛା ସତ୍ତ୍ୱେ ତା ହାତରେ ଗୁଞ୍ଜିଦେଇ ଚାଲିଗଲେ । ପରଦିନ ଯଥାସମୟରେ ରାଜକିଶୋର ଓ ମୋହନ ଦାସ ହେମ ଘରେ ଉପସ୍ଥିତ ହେଲେ । ପୂର୍ବ ପରାମର୍ଶାନୁସାରେ ରାଜକିଶୋର ଲୁଚି ରହିଲେ । ମୋହନ ଦାସ ସହିତ ହେମ ଅନ୍ୟାନ୍ୟ ଦୁଃଖ ସୁଖ ପରେ ଅସଲ କଥାଟି ପକାଇଲା । କହିଲା "ହଇହେ, ମାଳତୀକୁ ଯେମିତି ହାରଟି ଦେଇଚ, ମୋତେ ସେହିପରି ଗୋଟିଏ ହାର ଦିଅନ୍ତ ।"

ମୋହନ—ଅଜି ସେମିତି ହାର ମୁଁ କେଉଁଠୁ ପାଇବି ?

ହେମ—ନା, କାହିଁକି ପାଇବ ? ମାଳତୀ ବେଳକୁ ମିଳିଲା, ମୋ ବେଳକୁ·········

ମୋହନ—ଅହେ, ତୁମେ ବୁଝୁନା । ମୁଁ କଣ କିଣିଥିଲି ନା ଗଢ଼ାଇଥିଲି ଯେ·······

ହେମ—ଅଜି କୋଉଠୁ ଅଣିଲ ?· କଣ ପଡ଼ିଥିଲା ସାଉଁଟି ଅଣିଲ ?

ମୋହନ—ହଁ, ସାଉଁଟି ଅଣିଲି ଭଳି ଯେ । ଦିନେ ଢାଳରେର ରାଜା ତାଙ୍କର ରାଣୀଙ୍କ ସଙ୍ଗରେ ଦର୍ଶନକୁ ଅସିଥିଲେ । ଗୋବିନ୍ଦାର

ଯେଜମାନ ସେ । ଗୋବନ୍ଧାର କଣ କାମ ଥିଲା ଯେ କରେସ୍ତିରେ ସେ ମୋତେ କହିଲା ଦର୍ଶନ କରାଇ ଦେବାକୁ । ମୁଁ . ସେମାନଙ୍କୁ ଦର୍ଶନ କରାଇବାକୁ ନେଇଗଲି । ରାଜା ରାଣୀ ଦୁଇ ଜଣ ବଡ ଭକ୍ତ ଅଂଶର ଲୋକ ଏକା । ହାତ ଯୋଡି ଘଣ୍ଟାଏ କାଳ କେତେ କଣ ସ୍ତବ ପାଠ କଲେ । ତାଙ୍କ ସଙ୍ଗରେ ଗୋଟାଏ ପୋଇଲି ଥିଲା । ବୟସ ଚଉଦ ପନ୍ଦର ହେବ, ବେଶ ଗୋଲଗାଲ ଚେହେରା—ରୂପ ବୋହୂପୁଅ ଚନ୍ଦ୍ର-ଜଦିଆ ପରି ଜଳୁଚି । ମୋତେ ଏକୁଟିଆରେ ଚୁପ୍ କରି କହିଲା—ମଉସା, ଗୋଟାଏ କଥା କହନ୍ତି । ରଖିବ ? ମୁଁ କହିଲି—କଣ କହ । ସେ କହିଲା—ମୋତେ ଯଦି ଆଜି ଦିନକ ତମ ଘରେ ଲୁଚାଇ ରଖନ୍ତ, ବଡ ଉପକାର କରନ୍ତ ମଉସା ! ମୁଁ ବୁଝିଗଲି ଭିତର କଥା । କହିଲି—ଆଚ୍ଛା , ତୁ ବକ୍‌ସିସ୍ କଣ ଦେବୁ ? ସେ କହିଲା—ତମେ ମୋର ବାପ ସମାନ, ଏ ଜଗନ୍ନାଥଙ୍କ ମନ୍ଦିର, ସତ କହୁଚି ତମକୁ ଖୁସି କରିଦେବି । ମୋ ଦେହରେ ଯେତେ ଅଳଙ୍କାର ଅଛି ସବୁଯାକ ଦେବି । ମୁଁ ତା ଦେହକୁ ଭଲ କରି ଚାହିଁଲି । ଦୁଇ ତିନି ହଜାର ଟଙ୍କାର ଅଳଙ୍କାର । ମନ ବଡ଼ ଲୋଭେଇଲା । କହିଲି—କାମ ବେଳେ ବୋହୂପୁଅ ସମସ୍ତେ ସେମିତି କହନ୍ତି । କାମ ସରିଗଲେ ଅଉ କିଏ କାହାକୁ ପଚାରେ ? ସେ କହିଲା—ଚିନ୍ତା କରନା,ସେଥିଲାଗି ଅଗତୁରା ଦେଇଛି ନିଅ । ସାଙ୍ଗେ ସାଙ୍ଗେ ତା ବେକରୁ ହାରଟା ବାହାର କରି ମୋ ହାତକୁ ବଢ଼ାଇଦେଲା ।

ହେମ—ଅଚ୍ଛା, ସେ କାହିଁକି ତମ ଘରେ ସେ ଦିନ ଲୁଚି ରହିବାକୁ କହୁଥିଲା ?

ମୋହନ—ଅରେ, ଆଚ୍ଛା ପଚାରୁଚ । ରଜା ବୁଢ଼ା, ଭଲ ଟୋକାଟା ଦେଖି କେଉଁଠୁ ଧରି ଅଣିଥିଲା ବୋଧ ହୁଏ । ଧରି ଅଣିଲେ

କଣ ହେବ, ଟୋକାଟାର ମନ ମାନିଲେ ତ ହୁଏ । ସେ କେମିତି ଖାସିଯିବ, ସେଥିପାଇଁ ········

ହେମ—ହଉ, ତା ପରେ କଣ ହେଲା ?

ମୋହନ—ମୁଁ ସେ ହାରଟି ଭଲ କରି ଲୁଗାରେ ଗୁଡ଼ାଇ କମରରେ ଖୋସିଦେଲି । କହିଲି—ଇଲଗେ ସୁବିଧା ହେବ ନାହିଁ । ଯଦି କେହି ଜାଣି ପାରିବ ? ସେ କହିଲା—ତାଲଗେର କୋଟି ଦେଖିଚ ? ମୁଁ ମୁଣ୍ଡ ହଲାଇଲି । ସେ କହିଲା—ତମେ ସଞ୍ଜବେଳେ ସେଠାକୁ ଗଲେ ମୁଁ ଲୁଚିକରି ତମ ସଙ୍ଗରେ ଗୁଲିଆସିବି । ମୁଁ 'ହଁ' କଲି । ସେ ବହୁତ ନେହୁରି ମିନତି କରି କହିଲା—ମଉସା, ଏତିକି ଉପକାର କଲେ ବହୁତ ଟଙ୍କା ତୁମକୁ ଦେବି ।

ହେମ—ତା ପରେ କଣ ହେଲା ?

ମୋହନ—ତା ପରେ ଆଉ ହବ କଣ ? ସେ ଦିନ କଣ କାମ ପଡ଼ିଗଲା, ମୋର ବି ମନେ ପଡ଼ିଲା ନାହିଁ । ତହିଁ ଆର ଦିନ ମୁଁ ଗଲା-ବେଳକୁ ସେମାନେ କଟକ ବାହାରିଗଲେଣି ।

ହେମ—ଆହା ! ସେ ଝିଅଟି କେତେ କାନ୍ଦୁ ନ ଥିବ ! ତମକୁ ଗାଳି ଦେଉଥିବ ଏକା ସବୁବେଳେ ।

ମୋହନ—ଅରେ., ଯା ମ, ଗାଳି ଦେଉଥିବ ! ଗାଳିରେ କଣ ମନୁଷ୍ୟ ମରିଯାନ୍ତି ? ମୋ କପାଳ ତ ଖରାପ; ଆଉ କେତେଗୁଡ଼ାଏ ମାଲ୍ ପାଇଥାନ୍ତି—ହରାଇ ବସିଲି ।

ହେମ—ସେ ହାରଟି ବଡ଼ ସୁନ୍ଦର ହାର ଏକା ।

ମୋହନ—ସୁନ୍ଦର ହେଉ ଅସୁନ୍ଦର ହେଉ,ଆଉ ସେମିତି ହାର ମୁଁ କେଉଁଠୁ ପାଇବି !

ରାଜକିଶୋର ଉଭୟଙ୍କର କଥାବାର୍ତ୍ତା ସବୁ ଶୁଣୁଥିଲେ । ତାଙ୍କ ହୃଦୟ ମଧ୍ୟରେ ଥରେ ଥରେ ପ୍ରଚଣ୍ଡ ଝଟିକା ପ୍ରବାହିତ ହେଉ-ଥିଲା । ମୋହନ ଦାସ ଚାଲିଯିବା ପରେ ଦୀର୍ଘ ନିଶ୍ୱାସଟିଏ ପକାଇ ପଦାକୁ ବାହାରିଲେ; କିନ୍ତୁ ହୃଦୟର ଦୁଃଖ ଗୋପନ ରଖି ହେମକୁ ଧନ୍ୟବାଦ ଦେଇ କହିଲେ "ମୋଲାଗି ତୁମେ ବହୁତ କଷ୍ଟ ସହି-ଲଣି । ଆଜ ଟିକିଏ କଷ୍ଟ କରି ମାଳତୀଠାରୁ ସେ ହାରଟି ଦୁଇ ଦିନ ପାଇଁ ଯଦି ଆଣି ଦିଅନ୍ତ, ମୁଁ କଟକରେ ଗୋଟାଏ ଭଲ ବଣିଆକୁ ଦେଖାଇ ସେହିପରି ହାର ଦୁଇଟା ଗଢ଼ାନ୍ତି ।"

"ଦୁଇ ଦିନ କାହିଁକି, ଚାରି ଦିନ ରଖ, ମୁଁ କାଲି ସେ ହାର ଆଣି ଦେଉଚି ।"

ରାଜକିଶୋର ଟିକିଏ ଭାବିଲେ, କହିଲେ,"ନା, କାଲି ଆଣିବା ଦରକାର ନାହିଁ । ମୁଁ ଦୁଇ ଦିନ ଛୁଟିପାଇଁ ଦରଖାସ୍ତ ଦେବି । ଛୁଟି ମଞ୍ଜୁର ହେଲେ ତମକୁ କହିବି । ସେହି ସମୟରେ ହାର ଆଣିଦେବ ଯେ ସଙ୍ଗେ ସଙ୍ଗେ କଟକ ନେଇଯିବି ।"



## —ନବମ ପରିଚ୍ଛେଦ—

ଦିନ ଦୁଇଟା ସମୟ ହେବ । ଜଗନ୍ନାଥ ମଙ୍ଗରାଜଙ୍କର ସେପର୍ଯ୍ୟନ୍ତ ସ୍ନାନ ହୋଇ ନାହିଁ । ସେ ଗାଲରେ ହାତ ଦେଇ ପିଣ୍ଡା ଉପରେ ବସିଛନ୍ତି । ରମା ତାଙ୍କୁ ଲକ୍ଷ୍ୟ କରି କହୁଛି—"ସବୁ-ବେଳେ ବସି ଭାବିଲେ କଣ ହେବ ? ଯାହା ବିପଦ ଥିଲା ହୋଇଗଲା । ତମେ ଜନ୍ମ ଦେଇଚ ବୋଲି କଣ କର୍ମ ଦେଇଚ ?" ରାଜକିଶୋର ଦ୍ୱାରରେ ଠିଆ ହୋଇ ଦେଖିଲେ, ମଙ୍ଗରାଜଙ୍କର ପୂର୍ବ

ଚେହେରା ନାହିଁ—ନିତାନ୍ତ ବୃଦ୍ଧ ହୋଇଗଲେଣି । କୋଟରଗତ ଚକ୍ଷୁ, ଲୋଲିତ ଗଣ୍ଡଯୁଗ ଏବଂ ତଦୁପରି ଶୁଭ୍ର ଶ୍ମଶ୍ରୁରାଜି ଦେଖିଲେ ଗୋଟାଏ ପ୍ରେତ ବୋଲି ଲୋକର ଭ୍ରମ ହେବ । ତାଙ୍କର ଏପରି ଦୁର-ବସ୍ଥା ଦେଖି ରାଜକିଶୋର ପ୍ରାଣରେ ବଡ଼ ବ୍ୟଥା ଅନୁଭବ କଲେ । ସେହି ଜଗନ୍ନାଥ ମଙ୍ଗରାଜ ରାଜକିଶୋରଙ୍କ ପ୍ରତି କି ଅମାନୁଷିକ ବ୍ୟବହାର କରି ନାହିଁ ? କ୍ୱିରରେ ଥରି ଥରି ଅନ୍ଧକାର ରାତିରେ ଯେତେବେଳେ ସେ ଘରୁ ବାହାରିଗଲେ, ହାୟ ! ଆଜି ସେ କଥା ମନରେ ପଡିଲେ ଘୃଣାରେ ମଙ୍ଗରାଜଙ୍କର ନାମ ସୁଦ୍ଧା ଉଚ୍ଚାରଣ କରିବାକୁ ଇଚ୍ଛା ହେଉ ନାହିଁ । ଏଡ଼େ ନିଷ୍ଠୁରହୃଦୟ ସେ ! ଆଉ ଆଖିରେ ଗୃହିଁଲେ ନାହିଁ ସୁଦ୍ଧା । ତାଙ୍କର ସେ ଦିନର ବ୍ୟବହାରରେ ରାଜକିଶୋର କାଣ, ଋଷ୍ୟଶୃଙ୍ଗ ଋଷି ହେଲେ ସୁଦ୍ଧା ଅସହିଷ୍ଣୁ ହୋଇ ଉଠିବେ । କିନ୍ତୁ ମଙ୍ଗରାଜଙ୍କର ବର୍ତ୍ତମାନ ଅବସ୍ଥା ଦେଖି ରାଜକିଶୋର-ଙ୍କର ଅନ୍ତରରୁ ବୈରଭାବ ଅନ୍ତର୍ହିତ ହୋଇଗଲା । ଚକ୍ଷୁ ତାଙ୍କର ଛଳ ଛଳ ହୋଇ ଆସିଲା । ସେ ଆଉ ଅନ୍ତରାଳରେ ଠିଆ ହୋଇ ସେ କରୁଣ ଦୃଶ୍ୟ ଦେଖିପାରିଲେ ନାହିଁ । ବୃଦ୍ଧଙ୍କର ଚରଣତଳେ ଭୂମିଷ୍ଠ ପ୍ରଣାମ କରି କହିଲେ "ମତେ ଚିହ୍ନି ପାରୁଛନ୍ତି ?" ମଙ୍ଗରାଜ କିଛି କ୍ଷଣ ରାଜକିଶୋରଙ୍କ ମୁହଁକୁ ଗୃହିଁଲେ, ତା ପରେ ପିଣ୍ଡାରୁ ଡେଇଁ ପଡ଼ି ତାଙ୍କୁ କୁଣ୍ଢାଇ ପକାଇ ଅଶ୍ରୁ ଗଦ୍‌ଗଦ୍ କଣ୍ଠରେ କହିଲେ "ବାପ, ରାଜୁ ! ତୁ ଆସିଛୁ ? ଏ ବୁଢ଼ାକୁ ଦେଖିବାକୁ ଆସିଛୁ ? କିନ୍ତୁ ଜଗନ୍ନାଥ ମଙ୍ଗରାଜ ଆଉ ଜଗନ୍ନାଥ ମଙ୍ଗରାଜ ହୋଇ ନାହିଁ । ଏ ଯେଉଁ ଦେହଟି ଦେଖୁଛୁ ତାହା ପ୍ରାଣହୀନ—ଜଗନ୍ନାଥ ମଙ୍ଗରାଜର ପ୍ରେତାତ୍ମା । ଜଗନ୍ନାଥ ମଙ୍ଗରାଜ ଆଉ ବଞ୍ଚି ନାହିଁ । କିଶୋରୀ ଯେଉଁ ଦିନ ନିରୁଦ୍ଦେଶ ହୋଇଛି, ଜଗନ୍ନାଥ ମଙ୍ଗରାଜ ସେହି ଦିନଠାରୁ ମରିଛି । ଆଜି କିଶୋରୀ……… ।" ବାଷ୍ପାବେଗରେ ବୃଦ୍ଧଙ୍କର କଣ୍ଠ ରୁଦ୍ଧ

ହୋଇ ଆସିଲା । ସେ ଆଉ କହିପାରିଲେ ନାହିଁ । ନ କହିଲେ ମଧ୍ୟ ରାଜକିଶୋର ତାଙ୍କର ମନୋଗତ ଭାବ ବୁଝିପାରିଲେ । କହିଲେ, "କିଶୋରୀର ନିରୁଦ୍ଦେଶ ଖବର ମୁଁ ଖବରକାଗଜରୁ ଶୁଣିଛି । ଆପଣ ଆଉ ଦୁଃଖିତ ହୁଅନ୍ତୁ ନାହିଁ । ମୋର ବିଶ୍ୱାସ, ଅଳ୍ପ ଦିନ ମଧ୍ୟରେ ତାର ସନ୍ଧାନ ମିଳିବ ।" ରାଜକିଶୋରଙ୍କର ଶେଷ ପଦଟି ବୃଦ୍ଧାଙ୍କର ଚିନ୍ତାନଳତପ୍ତ ପ୍ରାଣରେ ଚନ୍ଦନ ପ୍ରଲେପ ଦେଲା ପରି ଲାଗିଲା । ସେ ଆନନ୍ଦୋତ୍କଣ୍ଠିତ ଭାବରେ ରାଜକିଶୋରଙ୍କ ମୁହଁକୁ ଚାହିଁ କହିଲେ, "ସତ କହୁଛ ବାପ ! କିଶୋରୀକୁ ମୁଁ ପାଇବି ? ମା ମୋର ସତେ ଫେରି ଆସିବ ?" "ଆପଣ ଅଧୀର ହୁଅନ୍ତୁ ନାହିଁ । ଭଗବାନଙ୍କ ଉପରେ ବିଶ୍ୱାସ ରଖନ୍ତୁ । ନିଶ୍ଚୟ ଆପଣଙ୍କ ଇଚ୍ଛା ପୂର୍ଣ୍ଣ ହେବ । କିଶୋରୀ ନିର୍ବିଘ୍ନରେ ଫେରି ଆସିବ ।"

ରାଜକିଶୋର ସେହି ମୁହୂର୍ତ୍ତରେ ମୁକ୍ତାରାଜି-ଖଚିତ ମାଳତୀ-ପଦକ ସ୍ୱର୍ଣ୍ଣହାରଟି ପକେଟରୁ ବାହାର କରି ମଙ୍ଗରାଜଙ୍କର ହାତକୁ ବଢ଼ାଇଦେଲେ । କହିଲେ, "ଦେଖିଲେ ଏ ହାର କାହାର ?" ମଙ୍ଗରାଜ ସେ ହାରକୁ ଦେଖି ଚମକି ଉଠିଲେ । "ମୋ ମା ତ ଏ ହାର ପିନ୍ଧିଥିଲା । ତୁମେ କେଉଁଠାରୁ ଯାକୁ ପାଇଲ ? ମା ମୋର କେଉଁଠି ଅଛି ? ସତ କହ ବାପ, ସେ ଜୀବନରେ ଅଛି ତ ?"

ରାଜ—ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଯାହା ପଚାରୁଛି ଆଗ କହନ୍ତୁ । ଏ ହାର ଆପଣଙ୍କର କି ନା ଭଲ କରି ଚିହ୍ନନ୍ତୁ ।

ଜଗନ୍ନାଥ—ବେଶ୍ ଚିହ୍ନିଛି, ମୋର ଏ ହାର । ଅଳ୍ପ ତିନି ବର୍ଷ ତଳେ ପୂର୍ଣ୍ଣବାବୁ ଡେପୁଟି ଏ ହାର ମୋଠେ ବିକି କରିଅଛନ୍ତି । ମଝିରେ ଗୋଟିଏ ଚେନ୍ ଛିଡ଼ି ଯାଇଥିଲା—ନିଧିସାହୁ ବଣିଆ ଲଗାଇ ଦେଇଛି । ଦେଖିଲ ଏ ସୁନା ସେ ସୁନା ମିଶୁଛି ? ମୁଁ ବା ମିଛ କହିବି,

ପୂର୍ଣ୍ଣବାବୁ ଡେପୁଟି ମରିଯାଇ ନାହାନ୍ତି, ନିଧିସାହୁ ମରିଯାଇ ନାହିଁ । ପଚାରିଲେ ସେମାନେ ଅବଶ୍ୟ କହିବେ ।

ରାଜ—ମୁଁ ବର୍ତ୍ତମାନ ପୁରୀରେ ପୋଲିସ୍ ଚାକିରି କରୁଛି । ସେଠାରେ ଜଣେ ଏ ହାର ବିକିଥିଲା । ମୋର ସନ୍ଦେହ ହେବାରୁ ତା ଠାରୁ ଜବତ୍ କରି ଅପଣଙ୍କୁ ଦେଖାଇବାକୁ ଆଣିଛି । ଏ ହାର ଆପଣଙ୍କର ବୋଲି ଯେତେବେଳେ ନିଃସନ୍ଦେହରେ କହୁଛନ୍ତି, ନିଶ୍ଚୟ କିଶୋରୀର ସନ୍ଧାନ ମିଳିବ । ମୁଁ ଏଠାରୁ ଯାଇ ତଦନ୍ତରେ ଲାଗି ପଡ଼ିବି । କିଶୋରୀ ଜୀବନରେ ଅଛି, ଏ କଥା ଧ୍ରୁବ ଜାଣିବେ ।

ଜଗନ୍ନାଥ ମଙ୍ଗରାଜ ଅକୂଳ ପାରାବାର ମଧ୍ୟରେ କୂଳ ପାଇଲେ । ସେ ଯେତେବେଳେ ଶୁଣିଲେ ରାଜକିଶୋର ପୋଲିସ୍ ବିଭାଗରେ କାର୍ଯ୍ୟ କରନ୍ତି, ତାଙ୍କର ବୁକ୍‌ଭରା ବେଦନାରାଶି ଭେଦକରି ପ୍ରଫୁଲ୍ଲତାର କ୍ଷୀଣ ରେଖାଟି କଳା ବଉଦ ବକ୍ଷରେ ବିଦ୍ୟୁତ୍ ଗାରପରି କ୍ଷଣକ ପାଇଁ ତାଙ୍କର ଶୀର୍ଣ୍ଣ ମୁଖମଣ୍ଡଳରେ ଫୁଟି ଉଠିଲା । ସେ ରାଜକିଶୋରଙ୍କୁ କୋଳକୁ ଟାଣିନେଇ ବାତ୍ସଲ୍ୟ ଭୋଳା କଣ୍ଠରେ କହିଲେ, "ବାପ, ମୁଁ ଆଶୀର୍ବାଦ କରୁଛି, ପରମେଶ୍ୱର ତୋତେ ଦୀର୍ଘାୟୁ କରନ୍ତୁ ।"

ଆଉ କହି ପାରିଲେ ନାହିଁ । ତପ୍ତ ଅଶ୍ରୁଧାରାରେ ରାଜକିଶୋରଙ୍କର ମସ୍ତକ ସିକ୍ତ କରିବାକୁ ଲାଗିଲେ । ରାଜକିଶୋର ଶିଶୁଟିପରି କାନ୍ଦି କାନ୍ଦି ବୃଦ୍ଧଙ୍କର ହାତଟି ଧରି ପକାଇ କହିଲେ, "ମୁଁ ପିତୃହୀନ । କିନ୍ତୁ ଆଜି ଆପଣଙ୍କୁ ପାଇ ପିତୃହୀନ ବୋଲି ମନେ କରୁ ନାହିଁ । ଆପଣ ଚିନ୍ତା କରନ୍ତୁ ନାହିଁ । ଯଥାସାଧ୍ୟ ଚେଷ୍ଟାରେ କିଶୋରୀକୁ ଖୋଜି ବାହାର କରିବି ।"

ରାଜକିଶୋର ଯେତେବେଳେ ମଙ୍ଗରାଜଙ୍କଠାରୁ ବିଦାୟ ଗ୍ରହଣ କଲେ, ମଙ୍ଗରାଜେ ଏକ ହଜାର ଟଙ୍କାର ନୋଟ ତାଡ଼ାଟି ତାଙ୍କ

ହାତକୁ ବଢ଼ାଇ ଦେଇ କହିଲେ "ବାପ, ଏତକ ନେଇ ଯା, ଦର-କାର ହେଲେ ଖର୍ଚ୍ଚ କରିବୁ । ଆଉ ଯଦି ଅବଶ୍ୟକ ହୁଏ ମୋତେ ଚିଠି ଲେଖିବୁ, ନ ହେଲେ ଡାର କରିବୁ ।"

ରାଜକିଶୋର ପୁଣି ଅଭିମୁଖରେ ଯାତ୍ରା କଲେ । ପଥରେ ନାନା ପ୍ରକାର ଚିନ୍ତା ତାଙ୍କର ହୃଦୟକୁ ଆଲୋଡ଼ିତ କରିବାକୁ ଲାଗିଲା । ସେ ଭାବିଲେ—ବର୍ତ୍ତମାନ ମୋର କର୍ତ୍ତବ୍ୟ କଣ ? ଏ ହାର କିଶୋରୀର ବୋଲି ଯେତେବେଳେ ଉପଯୁକ୍ତ ପ୍ରମାଣ ମିଳୁଛି, ଅଇନା-ନୁଯାୟୀ ମାଳତୀଠାରୁ ମାଲ୍ ଜବତ୍ କରିବା ଉଚିତ । କିନ୍ତୁ ତଦ୍ଦ୍ୱାରା ଲାଭ କଣ ? ମାଳତୀ ମୋହନ ଦାସର ନାମ କହିବ । ମୋହନ ଦାସକୁ ମଧ୍ୟ ଗିରଫ କରାଯିବ । ମାତ୍ର ସେ ହେମ ପାଖରେ ଯାହା କହିଛି କୋର୍ଟରେ ସେହି କଥା କହିବ ସିନା ! ତଦ୍ଦ୍ୱାରା କିଶୋରୀକୁ ଅନୁସନ୍ଧାନ କରିବାର ପଥ ଯେ ସୁଗମ ହେବ, ମୋର ତ ସେପରି ବିଶ୍ୱାସ ହେଉ ନାହିଁ । କିଶୋରୀକୁ ତାଳଚେର ରାଜା ବଳପୂର୍ବକ ତାଙ୍କର ପ୍ରାସାଦକୁ ନେଇ ଯାଇଛନ୍ତି ଏବଂ ତାଳଚେର ରାଣୀଙ୍କ ଗହଣରେ ସେ ପୁରୀ ଆସିଥିଲା, ଏ ହାର କିମ୍ବା ମୋହନ ଦାସର ଜବାନବନ୍ଦି କଣ ତାହାର ଉପଯୁକ୍ତ ସାକ୍ଷ୍ୟ ? ରାଜାଙ୍କ ବିରୁଦ୍ଧରେ କେସ୍ କରିବାକୁ ହେଲେ ଉପଯୁକ୍ତ ପ୍ରମାଣ ଆବଶ୍ୟକ । ପ୍ରକୃତରେ କିଶୋରୀ ତାଙ୍କ ରାଜପ୍ରାସାଦରେ ଥିଲେ ସୁଦ୍ଧା ସେ ଫାଙ୍କି ଦେଇ-ପାରନ୍ତି । ତାଙ୍କର ଫାଙ୍କି ଦେବାର ଯଥେଷ୍ଟ ଉପାୟ ମଧ୍ୟ ଅଛି । ଫଳରେ ଏହିମାତ୍ର ହେବ—ଯଦି କିଶୋରୀ ସେଠାରେ ଥାଏ, ଆଉ ତାକୁ କୌଣସିମତେ ଉଦ୍ଧାର କରି ହେବ ନାହିଁ ।

ରାଜକିଶୋର ବହୁତ ଭାବିଲେ । ଶେଷରେ ସ୍ଥିର କଲେ—ବର୍ତ୍ତମାନ ହାର ଜବତ୍ କରି ମାଳତୀକୁ ଗିରଫ କରିବା କୌଣସି-ମତେ ଉଚିତ ନୁହେଁ । ଅନ୍ୟ କୌଣସି ଉପାୟରେ କିଶୋରୀର

ସନ୍ଧାନ କରିବା କର୍ତ୍ତବ୍ୟ । କିଶୋରୀର ସନ୍ଧାନ ମିଳିଲେ ହାରନ୍ତା ପାଇବାକୁ କେତେ ଡେରି ? ସେ ଏହି ସିଦ୍ଧାନ୍ତ କରି ପୁରୀ ନ ଯାଇ ତାଳଚେର ଯାତ୍ରା କଲେ । ବୋଲିବା ବାହୁଲ୍ୟ ମାତ୍ର, କଣ୍ଟେରି କାରଣ ଦେଖାଇ ଏକମାସ ଛୁଟିପାଇଁ ପୋଲିସ ସାହେବଙ୍କ ନିକଟକୁ ସେହି ଦିନ ଗୋଟାଏ ତାର ପଠାଇଦେଲେ ।



## —ଦଶମ ପରିଚ୍ଛେଦ—

ସଦାନନ୍ଦ ସାମନ୍ତରାୟ ଜଗନ୍ନାଥ ମଙ୍ଗରାଜଙ୍କ ପରି ମହାଜନୀ କାରବାର କରୁ ନ ଥିଲେହେଁ ନିର୍ଦ୍ଧନ ନ ଥିଲେ । ଦରକାର ପଡିଲେ ମୁହୂର୍ତ୍ତକେ ପାଞ୍ଚ ହଜାର ଗଣି ଦେଇ ପାରନ୍ତି । ଜମିବାଡ଼ି ମଧ୍ୟ ଜଗନ୍ନାଥ ମଙ୍ଗରାଜଙ୍କଠାରୁ କୌଣସି ଅଂଶରେ କମ୍ ନୁହେଁ ।

ସଦାନନ୍ଦ ସାମନ୍ତରାୟଙ୍କର ସମସ୍ତ ସମ୍ପତ୍ତି ତାଙ୍କର ସ୍ୱୋପାର୍ଜିତ । ତାଙ୍କର ପିତା ରାଧାଶ୍ୟାମ କାନୁନଗୋ ଯେତେବେଳେ ଆଖି ବୁଜିଲେ, ତାଙ୍କୁ ସେତେବେଳେ ଦ୍ୱାଦଶ ବର୍ଷ ମାତ୍ର । କେବଳ ଘରତଳ ପାଞ୍ଚ ଗୁଣ୍ଠ ଛଡ଼ା କଡ଼ାଏ କଉଡି ସୁଦ୍ଧା ପିତା ତାଙ୍କର ରଖି ଯାଇ ନ ଥିଲେ । ରାଧାଶ୍ୟାମଙ୍କ ମୃତ୍ୟୁର ଠିକ୍ ଛ ମାସ ପରେ ଚବିଶପ୍ରଗନାରେ ବନ୍ଦୋ-ବସ୍ତ କ୍ୟାମ୍ପ ପଡିଲା । ଡେପୋଟି ବାବୁ ହରିହର ଦାସ ସଦାନନ୍ଦଙ୍କର ଦୁରବସ୍ଥା ଦେଖି ତାଙ୍କୁ ବନ୍ଦୋବସ୍ତ ଅଫିସରେ ଦଶଟଙ୍କା ବେତନରେ ମୋହରିର କାମ ଖଣ୍ଡିଏ ଦେଲେ । ସେହି ଦିନଠାରୁ ସଦାନନ୍ଦଙ୍କର ଭାଗ୍ୟ ପରିବର୍ତ୍ତିତ ହେଲା । ସେ କ୍ରମେ ମୋହରିରରୁ ଅମିନରେ ପରିଣତ ହେଲେ । ବନ୍ଦୋବସ୍ତରେ ଅମିନମାନଙ୍କର ରୋଜଗାର ବୋଧ ହୁଏ କାହାରିକୁ ଅବିଦିତ ନାହିଁ । ଭାଗ୍ୟଦେବୀ ପ୍ରସନ୍ନ

ହେଲେ ସୁଯୋଗ ନଜେ ନଜେ ଆସି ଦ୍ୱାରସ୍ଥ ହୁଏ । ବର୍ଷ ଦଶ ବାରଟା ମଧ୍ୟରେ ସଦାନନ୍ଦ ଅତୁଳ ଐଶ୍ୱର୍ଯ୍ୟର ଅଧୀଶ୍ୱର ହୋଇ ଉଠିଲେ । ରଘୁନାଥପୁରର ନବଘନ ପଟ୍ଟନାୟକଙ୍କ ମଧ୍ୟମା କନ୍ୟା ଶ୍ରୀମତୀ ସୁରୁଚି ଦେବୀଙ୍କ ସହିତ ତାଙ୍କର ଶୁଭ ବିବାହ ସମ୍ପନ୍ନ ହୋଇଗଲା । ବିବାହ ପରେ ସଦାନନ୍ଦ ଆଉ ଗୃହକର୍ମ କରିବାକୁ ମନ ବଳାଇଲେ ନାହିଁ । କିନ୍ତୁ ଧଳା ଚକ୍‌ଆର ଲେଭ୍ ସମ୍ବରଣ କରିବା ତାଙ୍କ ପକ୍ଷରେ ନିତାନ୍ତ କଷ୍ଟକର ହୋଇ ଉଠିଲା । କଣ କରିବେ ? କପର ବାହାରୁ ଦୁଇ ପଇସା ଆସି ଜମା ବୃଦ୍ଧି କରିବ, ସେହି ଉପାୟ ଚିନ୍ତା କରିବାକୁ ଲଗିଲେ । ସୁରୁଚି ଦେଈ ତାଙ୍କର ଉପଯୁକ୍ତ ସହଧର୍ମିଣୀ । ସ୍ୱାମୀଙ୍କର ଅଧୀରତା ଦେଖି ସେ ଉପଯୁକ୍ତ ପରାମର୍ଶ ଦେଲେ । ସଦାନନ୍ଦଙ୍କର ମନକୁ ମଧ୍ୟ ପାଇଲା ସେ କଥା । ସେ ସେହି ଦିନଠାରୁ ଘରେ ବସି ମହାଜନୀ କାରବାର କରିବାକୁ ଆରମ୍ଭ କଲେ ।

ସଦାନନ୍ଦ ଜଗନ୍ନାଥ ମଙ୍ଗରାଜଙ୍କଠାରୁ କୌଣସି ଗୁଣରେ ନ୍ୟୂନ ନୁହନ୍ତି । ଯଦି ପରସ୍ୱାପହାରୀ, ଅନ୍ୟାୟୀ, ଜାଲିଆମାନଙ୍କର ତାଲିକା କରାଯାଏ, ସାମନ୍ତରାୟ ଓ ମଙ୍ଗରାଜ ଉଭୟେ ଶୀର୍ଷ ସ୍ଥାନ ଅଧିକାର କରିବେ । ହେଲେ ସଦାନନ୍ଦଙ୍କ ପ୍ରତି ସରକାରଙ୍କର ଅନୁଗ୍ରହ ଯଥେଷ୍ଟ ଥିଲା । ସରକାରଙ୍କ ଅନୁଗ୍ରହରେ ସେ ପ୍ରେସିଡେଣ୍ଟ ହେଲେ । କ୍ରମେ ସାମନ୍ତରାୟ ଉପାଧି ମଧ୍ୟ ପାଇଲେ । ଏବେ ବର୍ଷ ଗୁରିଟା ହେବ ସେ ମହାଜନୀ ବ୍ୟବସାୟ ବନ୍ଦ କରିଅଛନ୍ତି କେବଳ ପୁଅର ବାରମ୍ବାର ଅନୁରୋଧରେ । ସଦାନନ୍ଦଙ୍କର ବ୍ୟବସାୟ ବନ୍ଦ ହେବାରୁ ଜଗନ୍ନାଥଙ୍କର ବ୍ୟବସାୟ ବେଶ୍ ପ୍ରଖର ଗତିରେ ଗ୍ଲିଲା । ସେଟା କିନ୍ତୁ ସଦାନନ୍ଦଙ୍କ ପକ୍ଷରେ ବଡ଼ ଅସହ୍ୟ ହୋଇ ଉଠିଲା । ସଦାନନ୍ଦ ଜଗନ୍ନାଥଙ୍କୁ ଦେଖିଲେ ହାଡ଼େ ହାଡ଼େ ଜଳିଯିବାକୁ

ଲାଗିଲେ । ଜଗନ୍ନାଥଙ୍କୁ ସଦାନନ୍ଦଙ୍କର ମନୋଗତ ଭାବ ବୁଝିବାକୁ ବିଳମ୍ବ ହେଲା ନାହିଁ । ସେ ମଧ୍ୟ ତାଙ୍କୁ ସେହିପରି କୋପ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ଉଭୟଙ୍କ ମଧ୍ୟରେ ପୂର୍ବରୁ ଯେଉଁ ବୈରଭାବ ପ୍ରଚ୍ଛନ୍ନ ଭାବରେ ଥିଲା, ତାହା ବର୍ତ୍ତମାନ ଶତଗୁଣ ହୋଇ ଉଠିଲା । ସଦାନନ୍ଦ ଅହରହ ଚିନ୍ତା କରିବାକୁ ଲାଗିଲେ, କିପରି ଜଗନ୍ନାଥ ମଙ୍ଗରାଜଙ୍କର ସମସ୍ତ ସମ୍ପତ୍ତି ହସ୍ତଗତ କରି ତାଙ୍କୁ ପଥର ଭିକାରୀ କରାଇବେ । ଭାଗ୍ୟକୁ ଏକମାତ୍ର କନ୍ୟା ଭିନ୍ନ ଜଗନ୍ନାଥଙ୍କର ଉତ୍ତରାଧିକାରୀ କେହି ରହିଲେ ନାହିଁ । ସଦାନନ୍ଦ ଭାବି ଦେଖିଲେ, ଯଦି କୌଶଳକ୍ରମେ ତାଙ୍କର ପୁତ୍ର ଗୋକୁଳ ସହିତ କଶୋରୀର ହାତ-ଗଣ୍ଠି ପଡ଼ିଯାଏ, ତେବେ ଅକ୍ଳେଶରେ ମଙ୍ଗରାଜଙ୍କ ସମସ୍ତ ସମ୍ପତ୍ତି ତାଙ୍କର କରଗତ ହେବ । ସେଥିପାଇଁ ସେ ନାନା ଚେଷ୍ଟା କରିବାକୁ ଲାଗିଲେ । ମଙ୍ଗରାଜେ କମ୍ ଚତୁର ନୁହନ୍ତି । ସେ ସଦାନନ୍ଦଙ୍କର ମନକଥା ଜାଣିପାରି ପ୍ରତିଜ୍ଞା କରି ବସିଲେ—ଏକମାତ୍ର ଆଦରିଣୀ କନ୍ୟାକୁ ବରଂ ବାହା ନ ଦେବେ, ତଥାପି ସଦାନନ୍ଦଙ୍କ ପୁଅ ସହିତ କେବେହେଁ ବିବାହ ଦେବେ ନାହିଁ ।

ସଦାନନ୍ଦ ବହୁ ଦିନ ଧରି ବହୁ ଚେଷ୍ଟା କରି ସୁଦ୍ଧା ମଙ୍ଗରାଜଙ୍କୁ କୌଣସିମତେ କୌଶଳ-ଜାଲରେ ପକାଇପାରିଲେ ନାହିଁ । ଏଣେ ସମ୍ପତ୍ତିର ଲୋଭ ସମ୍ବରଣ କରି ହେଉ ନାହିଁ । କେଉଁ ଦୂରଦେଶରୁ ଆଜି କିଏ ଆସି ତାଙ୍କର ଆଖି ଆଗରେ ଅଗାଧ ସମ୍ପତ୍ତିର ମାଲିକ ହୋଇ ବସିବ, ଆଉ ସେ ଏଡ଼େ ଅଯୋଗ୍ୟ ଯେ, ଦୁଆରମୁହଁରେ ଥାଇ ସୁଦ୍ଧା ନୀରବରେ ସେ ଦୃଶ୍ୟ ଦେଖୁଥିବେ ? ନା, ତାହା କଦାପି ହୋଇ ନ ପାରେ । ଯେ କୌଣସି ଉପାୟରେ ହେଉ ମଙ୍ଗରାଜଙ୍କର ସମ୍ପତ୍ତି ସେ ହସ୍ତଗତ କରିବେ । ସେଥିପାଇଁ ଯାହା କରିବାକୁ ପଡ଼ିବ, ତାହା କରିବାକୁ ସେ ପ୍ରସ୍ତୁତ । ନିଜର ପ୍ରାଣ ପର୍ଯ୍ୟନ୍ତ ଦେବାକୁ ସେ ଦ୍ୱିଧା କରିବେ ନାହିଁ ।

ସଦାନନ୍ଦଙ୍କର ମୁଣ୍ଡରେ ଏକ ସଇତାନୀ ବୁଦ୍ଧି ଖେଳିଲା । ସେ ଭାବିଲେ—ଜଗନ୍ନାଥ ମଙ୍ଗରାଜ ତାର ଝିଅକୁ ଗୋକୁଳ ସଙ୍ଗରେ ବାହା ଦେବାକୁ ଅନିଚ୍ଛୁକ । ତାର ଅଜ୍ଞାତରେ କୌଣସିମତେ ବାହା ଘଟଣା ହୋଇଗଲେ ପରେ ଆଉ କଣ କରିବ ? ବିବାହ ତ ଫେରାଇ ଦେବାର ଜିନିଷ ନୁହେଁ । ସେ ବାଧ୍ୟ ହୋଇ ଚୁପ୍ ରହିବ । ନ ହେଲେ ବା ନାଲିଶ କରିବ—କରୁ । କନ୍ୟା ସ୍ୱୀକୃତା ଥିଲେ ହାକିମ ତ ବିବାହକୁ ନାମଞ୍ଜୁର କରିପାରିବେ ନାହିଁ ? ଯଦି ନାମଞ୍ଜୁର କରନ୍ତି, ବିବାହିତା କନ୍ୟାକୁ ଆଉ ବା କିଏ ବିଭା ହେବ ? ଏହି ଉପାୟରେ ମଙ୍ଗରାଜ ନିଶ୍ଚୟ ଜବତ୍ ହେବ । ସଦାନନ୍ଦ ତାଙ୍କର ସମସ୍ତ ବୁଦ୍ଧି କୌଶଳ ବ୍ୟୟ କରି ନୂତନ ଯୋଗାଡରେ ଲାଗିପଡିଲେ ।

ପାଣୁ ମହାରଣାଙ୍କର ବିଧବା ସ୍ତ୍ରୀ ସାବୀ ଗାଁର ସମସ୍ତ ସ୍ତ୍ରୀଲୋକଙ୍କର 'ସାବୀଅପା' । ସେହି ସୂତ୍ରେ ସମସ୍ତଙ୍କ ଘରେ ତାର ଅବାଧ ପ୍ରବେଶ । କେବଳ ଘର ଡିଲିଖଣ୍ଡେ ଭିନ୍ନ ତାର ଆଉ କିଛି ଜମିଜମା ନାହିଁ । କାହାର ଧାନ କୁଟି, କାହାର ଘର ଲିପି, କାହାର ବା ଏଣୁ ତେଣୁ ବୋଲହାକଟାଏ କରି ଗୁଡ଼ଲ ମାଣେ, ପରିବା ଦିଟା ନେଇ ତାର ସୁଖେ ଦୁଃଖେ ଚଳିଯାଏ ।

ସେ ଦିନ ଫଗୁ ଦଶମୀ । ଦୋଳ ପୂର୍ଣ୍ଣିମାକୁ ମଙ୍ଗରାଜଙ୍କର 'ନୂଆ ଖାତା' ହେବ ବୋଲି ସେ ମନ ପ୍ରାଣ ନିୟୋଗ କରି ବାକୀ ଅଦାୟରେ ଲାଗି ପଡ଼ିଛନ୍ତି । ଡ଼ମାକୁ ଛାଡ ଆଉ ତିନିଟା ପିଆଦା ଠିକାରେ ବହିଛନ୍ତି । ତଥାପି ଅନ୍ୟାନ୍ୟ ବର୍ଷ ତୁଳନାରେ ସେ ବର୍ଷ ଅଦାୟ ବଡ କମ୍ । ଏଣେ ପୂର୍ଣ୍ଣିମା ନିକଟ ହୋଇ ଆସିଲାଣି । ପାଖ-ଆଖର କେତେ ଜଣ ଖାତକଙ୍କ ପାଖକୁ ସନ୍ଧ୍ୟାବେଳେ ମଙ୍ଗରାଜେ ନିଜେ ବାହାରି ପଡିଲେ । ପିଆଦା ଯିବା ଅପେକ୍ଷା ଖାଉନ୍ଦ ନିଜେ ଯାଇ ଦୁଆରେ ପହଞ୍ଚିଲେ ନିଶ୍ଚୟ କିଛି ଫଳ ହେବ ତ !

ରାତି ଘଣ୍ଟାକରୁ ବଜିଲଣି । ଉମା ସେପର୍ଯ୍ୟନ୍ତ ମଫସଲରୁ ଫେରି ନାହିଁ । କଣେଶ୍ୱରୀ ଦ୍ୱାର ବନ୍ଦ କରି ପିଣ୍ଡାରେ ବସି ପରିବା କାଟୁଛି । ସାବିତ୍ରୀ କବାଟରେ ହାତ ମାରି ଡାକିଲା, "ଜେଜେ ଶୋଇ, ଶୋଇଲଣି କି ? ସଞ୍ଜ ଘଣ୍ଟା ନ ବାଜୁଣୁ ଦୁଆର କିଳିଚ କାହିଁକି ମ ?" କଣେଶ୍ୱରୀ ଭିତରୁ ଥାଇ କହିଲା, "ସାବିତ୍ରୀଅପା ନା କିଏ ?"

ସାବିତ୍ରୀ—ହଁ ଜେ, ମୁଁ । କବାଟ ଫିଟା । ବାପା କୁଆଡ଼େ ଯାଇ-ଛନ୍ତି କି ?

କଣେଶ୍ୱରୀ କବାଟ ଖୋଲି ଦେଇ କହିଲା—"ସେ ତଳ-ପାଟଣାକୁ ଯାଇଛନ୍ତି—ଇଏତେ ଆସିବେ ।"

ସାବିତ୍ରୀ—ଉମା ?

କଣେଶ୍ୱରୀ—ଉମା ତ ଦୁଇ ପହରୁ କୁଆଡ଼େ ଯାଇଚି ସେ ଏପର୍ଯ୍ୟନ୍ତ ତାର ଦେଖା ନାହିଁ ।

ସାବିତ୍ରୀ—ହଉ, ଭଲ ହୋଇଚି କେହି ନାହାନ୍ତି । ଗୋପୀନାଥ-ପୁର ଗୋପୀନାଥ ବଜେ ହୋଇଚନ୍ତି, ତୁ ଆ ଦେଖି ଆସିବୁ ।

କଣେଶ୍ୱରୀ—କେଉଁଟି ଅଛନ୍ତି ?

ସାବିତ୍ରୀ—କାଶିଆ ଦୁଆରେ ଭୋଗ ଖାଉଚନ୍ତି ।

କଣେଶ୍ୱରୀ—କାଶିଆ······ଗୁଣ୍ଡିଆ କାଶିଆ ?

ସାବିତ୍ରୀ—ହଁ ।

କଣେଶ୍ୱରୀ—ଘରେ କେହି ନାହାନ୍ତି । ରାତିଟାରେ ଏତେ ବାଟ ମୁଁ ଯିବି ନାହିଁ ।

ସାବିତ୍ରୀ—କି ଜେ, ଘରକୁ କିଏ ନେଇଯାଉଚି କି ? ଯିବୁ ଟିକିଏ ଗୋଡ଼େ ଟିକିଏ ଦେଖି ଆସିବୁ । ଅଣ୍ଡିରି ଚଣ୍ଡିରି ଘର, ମା ଅଛୁ ନା

ମାଉସୀ ଅଛୁ ଯେ ଝିଅର ମନ ଜାଣି ପୂନେଇଁ ପରବରେ ଦଅଁ ଦେବତା ଦେଖେଇବାକୁ ନେଇଯିବ ? ଏତେବେଳେ ଦଅଁ ଦେବତା ଦେଖିବୁ ନାହିଁ ତ ଶାଶୂ ଘରେ କଣ ଦେଖିବୁ ? ମୁଁ ସାଙ୍ଗରେ ଅଛୁ, ତୋର ଡର କଣ ? ଚଞ୍ଚଳ ଆ । ତେଣେ ଦଅଁ ଯଦ ବାହାରିଯିବେ, ଆଉ······

କଣୋଶ୍ରୀ—ନାଇଁ ସାବୀ ଅପା, ଦାଣ୍ଡ ମଝିରେ ଏତେ ବାଟ ମୁଁ ଯିବ ନାହିଁ ।

ସାବୀ—କଲେ,ଦାଣ୍ଡରେ କାହିଁକ ଯିବୁ ? ପଧାନ ଘର ବାଡ଼ିରେ ତ ବାଟ ଅଛୁ । ତାଙ୍କ ବୋହୂ ଝିଅପୁଣିମାନେ ସେହି ବାଟରେ ଯାଇ ଦେଖୁଚନ୍ତି କେମିତ ? ତୁ ଅଭିମାନୀ ଝିଅଟା, ତତେ ଏତେ ନାଜ ମାଡ଼ ଯାଉଚ ? ଆ, ଚଞ୍ଚଳ ଆ ।

କଣୋଶ୍ରୀକୁ କୌଣସି କଥା କହିବାର ଅବସର ନ ଦେଇ ସାବୀ ତାର ହାତ ଧରି ଟାଣି ନେଇଗଲା । ସେ ଦୁଇ ଜଣ ପଧାନ ବାଡ଼ିରୁ ସାହି ବାଡ଼ିକୁ ଗଡ଼ିଲାବେଳେ ଚାରି ପାଞ୍ଚଜଣ ଲୋକ ସେମାନଙ୍କ ଆଡ଼କୁ ଅସୁଥିବାର କଣୋଶ୍ରୀ ଦେଖି ପାରିଲା । ସେ ସାବୀର ପଣନ୍ତ ଟାଣି ଧରି କହିଲା, "ସାବୀ ଅପା, ଦେଖିଲୁ, ଏଣେ କଏ ପଞ୍ଚାଏ ଲୋକ ଅସୁ-ଚନ୍ତି । ମୁଁ ଆଉ ଯିବ ନାହିଁ ।" ସାବୀ କହିଲା "ଆ, ଅମେ ଏଇଠାରେ ଟିକଏ ଲୁଚି ଯିବା । ସେମାନେ ଚାଲିଯାନ୍ତୁ, ଯିବା ।" ସାବୀ ଆଉ କଣୋଶ୍ରୀ ଲୁଚିବାକୁ ଗଲେ । କିନ୍ତୁ ନିକଟରେ ଲୁଚିବା ଭଲ ସ୍ଥାନ ନାହିଁ । ସବାଗ୍ରଟାଏ ଥୁଅ ହୋଇଥିଲା । ସାବୀ କଣୋଶ୍ରୀର ହାତ ଧରି ସେହି ସବାଗ୍ର ଭିତରକୁ ଟାଣି ନେଇଗଲା ।

ସେ ସବାଗ୍ର ସଦାନନ୍ଦଙ୍କର ପରାମର୍ଶାନୁସାରେ ପୂର୍ବରୁ ସେଠାରେ ଅନ୍ୟର ଅଜ୍ଞାତରେ ରଖା ଯାଇଥିଲା । ସାବୀ ମଧ୍ୟ ତାଙ୍କର ଶିକ୍ଷାରେ ଯାଇ ଦଅଁ ଦେଖିବାର ଛଳନା କରି କଣୋଶ୍ରୀକୁ ଘେନ ଅସି ସବା-

ଘରେ ବସାଇଦେଲ । ବେହେରାମାନେ ସଙ୍ଗେ ସଙ୍ଗେ ସବାରୀ ଉଠାଇ ଭଲ ବାଟରେ ଚାଲିବାକୁ ଲାଗିଲେ ।



## —ଏକାଦଶ ପରିଚ୍ଛେଦ—

ଚଉଶପରଗନାର ଅଧିକାଂଶ ଲୋକ ପ୍ରାୟ ସଦାନନ୍ଦଙ୍କର ଅନୁଗତ । ତାହାର ପ୍ରଧାନ କାରଣ, ସଦାନନ୍ଦଙ୍କର ପୁତ୍ର ଗୋକୁଳ ଇଟଳି ରେଭେନ୍ସା କଲେଜରୁ ଏମ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆଇ. ସି. ଏସ୍. ପଢ଼ିବା ପାଇଁ ବିଲାତ ଯାଇଛନ୍ତି । ସେ ଫେରି ଆସିଲେ ନିଶ୍ଚୟ ଦେଶରେ ଗୋଟାଏ ବଡ଼ ପାହ୍ୱାର ହାକିମ ହେବେ । ସଦାନନ୍ଦଙ୍କର ପ୍ରୀତିଭାଜନ ହୋଇଥିଲେ ତାଙ୍କ ପୁତ୍ରଙ୍କ ସହାୟତାରେ ଭାଗ୍ୟର ପରିବର୍ତ୍ତନ ହୋଇପାରେ । ସେହି ସୁଯୋଗରେ ସଦାନନ୍ଦଙ୍କର ସ୍ପର୍ଦ୍ଧା ଅତ୍ୟୁର ବଢ଼ିଗଲା । ଜଗନ୍ନାଥ ମଙ୍ଗରାଜଙ୍କୁ ଜବତ୍ କରିବାର ଇଚ୍ଛାମତ ସହଚର ମଧ୍ୟ ପାଇପାରିଲେ ।

କଶୋରୀ ସବାରୀରେ ବସିବାର କେତେକ ସମୟପରେ ଅଚେତନ ହୋଇ ପଡ଼ିଲା । ତାର ଯେତେବେଳେ ଚୈତନ୍ୟୋଦୟ ହେଲା, ସେ ଦେଖିଲା ସାବୀ ତାର ହାତ ଧରି ଗୋଟାଏ ଅପରିଚିତ ଗୃହ ମଧ୍ୟକୁ ନେଇ ଯାଉଛି । ସେ ଆକାଶକୁ ଚାହିଁଲା—ଘନଘୋର ଅନ୍ଧକାର । ଚନ୍ଦ୍ରଙ୍କର ଶେଷ ନିଷ୍ପ୍ରଭ ରଶ୍ମି ଟିକକ ପୁଣ୍ଡା ଧରିପୃଷ୍ଠରୁ ଲିଭିଗଲାଣି । ସେ ବୁଝିପାରିଲା ରାତ ତୃତୀୟ ପ୍ରହରରୁ ଅଧିକ ହୋଇଯାଇଛି । ସାବୀର ହାତ ଧରି ବଡ଼ କରୁଣ, ବଡ କାକୁତ ମିନତି ଭରି କମ୍ପିତ କଣ୍ଠରେ କହିଲା, "ସାବୀ ଅପା, ମୁଁ ତୋର କି ଦୋଷ କରିଥିଲି, ତୁ ମୋତେ ଏମିତ ଠକି ଦେଲୁ ? କେଉଁ ରାଜ୍ୟକୁ ନେଇ

ଆସିଲ୍ ମୋତେ ? ବାପା ତଲପାଟଣାରୁ ଆସି କେତେ ଖୋଜୁଥିବେ ! ମୋତେ ଦଣ୍ଡେ ନ ଦେଖିଲେ ସେ ଅନ୍ଧ ହୋଇଯାନ୍ତି—ତୁ କଣ କଲୁ ସାବୀ ଅପା ! ତୋ ମନରେ ଯଦି ଏତେ କଥା ଥିଲା...... ” କହୁ କହୁ ଧସ୍‌ପୃଷ୍ଠରେ ଲୋଟି ପଡ଼ିଲା । ସଙ୍ଗେ ସଙ୍ଗେ ତାର ସଂଜ୍ଞା-ଲୋପ ହେଲା ।

ପର ମୁହୂର୍ତ୍ତରେ କଶୋରୀର ମୂର୍ଚ୍ଛାଭଙ୍ଗ ହେଲାକ୍ଷଣି ସାବୀ ପାଣି ଗ୍ଲାସଟି ନେଇ ତା ଆଗରେ ଧରିଲା । କହିଲା, “ନେ ଶୋରୀ, ତୋଟି ଶୁଖିଯିବଣି । ପାଣି ଟୋପାଏ ପିଇ ଦେ ।” ପ୍ରକୃତରେ କଶୋରୀର ତୋଟି ଶୁଖି ଯାଇଥିଲା । ସେ ଏକ ନିଃଶ୍ୱାସରେ ପାଣି ଗ୍ଲାସଟି ନିଃଶେଷ କରିଦେଲା । ସାବୀ କହିଲା, “ବହୁତ ପାଉଛୁ, ଟିକିଏ ଶୋଇ ପଡ଼ ।” କଶୋରୀ ନିତାନ୍ତ ବ୍ୟାକୁଳ ଭାବରେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା । କେତେ କ୍ଷଣ ପରେ ଶୋକର ବେଗ ଟିକିଏ କମିଯିବାରୁ ସାବୀର ପାଦ ଦୁଇଟି ଦୁଇ ହାତରେ ମୁଠାଇ ଧରି କାତର କଣ୍ଠରେ କହିଲା, “ସାବୀ ଅପା ! ସତ କହ ଏ ଘର କାହାର ? ଆମ ଘର ଏଠାରୁ କେତେ ଦୂର ?” ସାବୀ ତାକୁ ଟିକେ ଉଠାଇ ଧରି କହିଲା “ଶୋରୀ, ସୁନା ଭଉଣୀଟି ମୋର, ତୁ ଟିକିଏ ଚୁପ୍ ହୋଇ ଶୋଇପଡ଼ । ରାତି ପାହିଲେ ସବୁ କଥା କହିବି ।” କଶୋରୀର ଧୈର୍ଯ୍ୟ ଅଣ୍ଟିଲା ନାହିଁ । ସେ ନିତାନ୍ତ ଶ୍ରାନ୍ତ ପିଲାଟି ପରି ସାବୀର କୋଳରେ ଲୋଟି ପଡ଼ି କାନ୍ଦିବାକୁ ଲାଗିଲା । କେତେକ ଅର୍ଥଲୋଭରେ, କେତେକ ଦଣ୍ଡଭୟରେ ସାବୀ ସିନା ଏତେ ବଡ଼ ଅନ୍ୟାୟ କାର୍ଯ୍ୟ କରି ପାରିଲା, ହେଲେ ସେ ନାରୀ—ନାରୀହୃଦୟ ତ ତାର ଅଛି । କଶୋରୀର ଦୁଃଖ ସେ ନିଜ ପ୍ରାଣରେ ଅନୁଭବ କଲା । ତାର ବିବେକ ତାକୁ ଶତ ଧିକ୍କାର ଦେଇ କହିଲା, “ତୁ ଚଣ୍ଡାଳୁଣୀ କି କୁକର୍ମ କଲୁ ? ନାରୀ ହୋଇ ଗୋଟାଏ ନାରୀର ସର୍ବନାଶ କଲୁ ସିନା ! ତୋର ଏ ପାପର ପ୍ରାୟଶ୍ଚିତ୍ତ

ବୈକୁଣ୍ଠି ।" ତା ଆଖି ମଧ୍ୟ ଓଦା ହୋଇ ଆସିଲା । କଣେଶ୍ୱ କାନ୍ଦ କାନ୍ଦ କହିଲା, "ସାବୀ ଅପା, ତୁ ବିଧବା । ପୁଣି ତିନି କାଳ ଅସି ଗଲାଣି । ଆଜ କେତେ ଦିନ ବା ବଞ୍ଚିବୁ ? ମୁଁ ତୋର କି ଅପରାଧ କରିଥିଲି, ଯୋଉଠାରେ ଏପରି ବିଶ୍ୱାସଘାତକତା କାହିଁକି କଲୁ ? ଯାହା ତ କଲୁଣି, ବର୍ତ୍ତମାନ ମୋତେ ଟିକିଏ ବିଷ ଆଣି ଦେ, ତୋର ସବୁ ପାପ କଟିଯିବ —ବହୁତ ଧର୍ମ ହେବ ।" ସାବୀ ପଣତରେ ଆଖି ପୋଛି କହିଲା, "ଶେଷ୍ଠି, କଣ କରିବି, ବୁଦ୍ଧି ତ ହୁଡ଼ୁଛି ! ଆର ଜନ୍ମରେ କି ପାପ କରି-ଥିଲି ଯେ, ଯୁବା ବୟସରେ ଗେରସ୍ତ ପୁଅଙ୍କୁ ଖାଇ ଅଣ୍ଟୁକୁଡ଼ୀ ହୋଇ ବସିଲି ।" ଶୋକରେ ତାର କଣ୍ଠ ରୁଦ୍ଧ ହେଲା । କଣେଶ୍ୱ କହିଲା, "ସାବୀ ଅପା, ତୋ ଗୋଡ଼ ଧରୁଛି; ମୁଁ ତୋର ଝିଅ ପରି, ସତ କହ ମୋତେ ବୈକୁଣ୍ଠାକୁ ଘେନି ଆସିଚୁ—ଏ କାହା ଘର ?"

"ଏ ଗାଁ ନାଁ ରଘୁନାଥପୁର, ସଦେଇ ସାନ୍ତରାଙ୍କ ଶ୍ୱଶୁର ଘର । ଆମ ଗାଁରୁ ଦଶ ବାର କୋଶ ହେବ ।"

"ଆମ ଘରଠାରୁ ବାର କୋଶ ଦୂର ? କାହିଁକି ଘେନି ଆସିଲୁ ଏଠାକୁ ?"

ସାବୀ ଗୋଟି ଗୋଟି କରି ସମସ୍ତ କଥା କହିଗଲା । ଶେଷରେ କହିଲା "ସାନ୍ତରାଙ୍କ ପୁଅ ଗୋକୁଳକୁ ତ ଦେଖିଚୁ । ରୂପ ଯେମିତି, ଗୁଣ ସେମିତି । ବିଲେଇତି ଦେଶକୁ ପଢ଼ିବାକୁ ଯାଇଥିଲା—ଏବେ ଆସିଛି । ଜଜସାହେବ କାମ ପାଇବ ସେ, ତୋ ଲାଗି ବର ଏକା, ମଙ୍ଗରାଜ ସାଆନ୍ତେ ନାହିଁ କରୁଚନ୍ତି ଖାଲି ସାନ୍ତରାଙ୍କ ସାଙ୍ଗରେ ତାଙ୍କର ପଟେ ନାହିଁ ବୋଲି ସିନା । ଆଜି ଯଦି ମା ସାଆନ୍ତାଣୀ ଥାନ୍ତେ, ସେ କଣ ଅମଙ୍ଗ ହୁଅନ୍ତେ ? ଏମିତି ବର ଭାଗ୍ୟକୁ ମିଳେ । ସେ ନାହିଁ କଲେ କରନ୍ତୁ, ତୁ ଆମର ରାଜି ହେଲେ ହେଲା । ବାହାଘର ଜୀବନର ସଉଦା । ସେଥିରେ ବାପ ମା କଅଣ କରିବେ ? କହନ୍ତି ପରା, 'ମନ ମନକା

ରାଜା, କ୍ୟା କରେଗା କାଜି ?' ତାହାପରଠା ସରିଗଲେ ମଙ୍ଗରାଜ ସାଆନ୍ତେ କଣ ଆଉ ଫେରାଇ ନେବେ ? ସେ ମନକୁ ଚୁପ୍ ହୋଇ ରହିବେ ନାହିଁ ଯେ । ତୁ ଆମର ରାଜା ହୋଇ ଯା—ସବୁ ଅଡୁଆ ଛୁଣ୍ଡିଯିବ ।" କଥାଗୁଡ଼ାକ ଛୁଞ୍ଚିପରି କଣୋଖ ଦେହରେ ଭେଦିଗଲା । ବାପାଙ୍କର ଯେଉଁଠି ଅନିଚ୍ଛା, ପୁଣି ସଦାନନ୍ଦ ତାଙ୍କର ପରମ ଶତ୍ରୁ— ସେ ଜାଣି ଶୁଣି ଶତ୍ରୁ ଗୋଡତଳେ ତାଙ୍କର ମୁଣ୍ଡ ନୁଆଁଇ ଦେବ ? ବାପା—ସେ ତ କେବଳ ବାପା ନୁହନ୍ତି । କଣୋଖ ଶୈଶବରୁ ମାତୃହୀନା । ବାପା ତା ପାଇଁ କଣ ନ କରିଛନ୍ତି ? କେତେ ଅଫଟ- ଅର୍ଦ୍ଦଳ ନ ସହିଛନ୍ତି ତାର ? ବାପାଙ୍କ ଯୋଗୁଁ ମାତୃବିୟୋଗ ଦୁଃଖ ତାକୁ ବାଧି ନାହିଁ ସିନା । ସେହି ବାପା, ସେହି ମା, ସେହି ସବୁ ତାର । ବାପା ତାକୁ କେତେ ସ୍ନେହ, କେତେ ଆଦର ନ କରନ୍ତି ? କେତେ ଭଲ ନ ପାନ୍ତି ? ସମ୍ପତ୍ତି ତାଙ୍କର ପ୍ରାଣଠାରୁ ବଡ଼ । କିନ୍ତୁ ସେ ତା ପାଇଁ ସମୁଦାୟ ସମ୍ପତ୍ତି ଉତ୍ସର୍ଗ କରିବାକୁ ସୁଦ୍ଧା କୁଣ୍ଠିତ ନୁହନ୍ତି—ତାର ପ୍ରମାଣ କଣ କଣୋଖ ପାଇ ନାହିଁ ? ସେ ଦିନ, ଉନ ହଜାର ଟଙ୍କାର ଦଲିଲ୍‌ଟା ସେ ନଷ୍ଟ କରିଦେଲା; ସେଥିପାଇଁ ବାପା ତାକୁ ପଦେ ହେଲେ କଡ଼ା କରି କହିଛନ୍ତି ? କାହାର ବାପା ଭଲା ଝିଅର ଏପରି ଅନ୍ୟାୟ ସହିବ ? ସଦାନନ୍ଦ ସାମନ୍ତରାୟଙ୍କ ସ୍ତ୍ରୀ ସ୍ୱାମୀଙ୍କୁ ଲୁଚାଇ ଚମ୍ପା ବୋଉକୁ ଦୁଇଟା ଟଙ୍କା ଧାର ଦେଇଥିଲା ବୋଲି ସଦାନନ୍ଦ କେତେ କଳିଗୋଳ ନ କରିଛନ୍ତି ଭଲା । ଗାଁ ଯାକ ହୁରି ପଡିଗଲା ସେଥିପାଇଁ ।

ସେପରି ବାପାଙ୍କ ମନରେ କଣୋଖ ଆଜି କଷ୍ଟ ଦେବ ? ବାପାଙ୍କର ଅନିଚ୍ଛାରେ ସେ ସଦାନନ୍ଦଙ୍କର ପୁଅକୁ ବିବାହ କରିବ ? ଛି, ଛି, କି ଲଜ୍ଜାର କଥା ! ହେଉ ସେ ବିଲାତ ଫେରନ୍ତା, ହେଉ ସେ ଜଜ ସାହେବ ! ସେମିତି ବର ଆଉ ମିଳିବେ ନାହିଁ—ନ ମିଳନ୍ତୁ;

ତା କପାଳରେ ଯାହା ଥିବ । ଭାଗ୍ୟରେ ଯଦି ଲେଖା ଥିବ ଘାସ କାଟିବାକୁ, ଇଚ୍ଛା କଲେ କଣ ଘୋଡ଼ା ଚଢ଼ିପାରିବ ? ସେ କଣ ପଢ଼ି ନାହିଁ ? ଗୁରୁଜନଙ୍କ ଆଶୀର୍ବାଦ ଦେବତାଙ୍କ ବର ସଙ୍ଗେ ସମାନ । 'ରଜୁନନା' ସେହି କଥା ତାକୁ ବାରେ ନୁହେ ଶତ ବାର ଶିଖାଇଛନ୍ତି । ପିତା ଅସନ୍ତୁଷ୍ଟ ହେଲେ ତାର ଜୀବନ କେବେ ଶାନ୍ତିମୟ ହୋଇ-ପାରିବ କି ? ନା, ସେ କେବେହେଁ ଏପରି ବିବାହ କରିପାରିବ ନାହିଁ ।

କଶୋରୀ କିଛି କ୍ଷଣ ନୀରବ ରହି କହିଲା "ସାନ୍ତୀ ଅପା, ତୋ ଗୋଡ଼ ଧରୁଛି. ମୋତେ ମୋ ବାପାଙ୍କ ପାଖରେ ଛାଡି ଦେଇ ଆ । ମୁଁ ରାଜି ହେବି ନାହିଁ । ଯଦି ଜୋର କରି ବାହାଘର କରିବ, ତେବେ ଜାଣିଥା ମୁଁ ନିଶ୍ଚୟ ବିଷ ଖାଇ ମରିବି ।"

ସାନ୍ତୀ ବହୁତ ବୁଝାଇଲା । ସଦାନନ୍ଦ ସେଠାକାର ଆଉ କେତେ ପ୍ରବୀଣା ସ୍ତ୍ରୀମାନଙ୍କୁ ପଠାଇ କେତେ ପ୍ରକାର କୌଶଳ କଲେ; ମାତ୍ର ସବୁ ନିଷ୍ଫଳ—ସବୁ ବ୍ୟର୍ଥ । କଶୋରୀ ସେହି ଏକ ଜିଦ୍ ଧରିଲା, ସେ ବିବାହ କରିବ ନାହିଁ । ଜୋର୍ କରି ବିବାହ କଲେ ବିଷ ଖାଇବ ।

ସଦାନନ୍ଦଙ୍କର ଭବିଷ୍ୟତର ସମସ୍ତ ସୁଖସ୍ୱପ୍ନ ଭାଙ୍ଗିଗଲା । ସେ ବୁଝି ପାରିଲେ କୌଣସି ଉପାୟରେ ଜଗନ୍ନାଥ ମଙ୍ଗରାଜଙ୍କର ଧନ-ରତ୍ନ ଲାଭ ହେବ ନାହିଁ କି କନ୍ୟାରତ୍ନ ଲାଭ ହେବ ନାହିଁ । ତେବେ ବର୍ତ୍ତମାନ ଉପାୟ କଅଣ ? କଶୋରୀକୁ କଅଣ କରିବେ ? ଯଦି ତାର ବାପ ପାଖକୁ ଛାଡି ଦେଉଛନ୍ତି, କଥା ନିଶ୍ଚୟ ପ୍ରକଟ ହୋଇଯିବ । ଫଳରେ ତାଙ୍କୁ ଜେଲ ଗୃହ ଅଳଙ୍କୃତ କରିବାକୁ ହେବ । ପୁଣି ଯାହାର ବିଲାତ ଫେରନ୍ତା—ଆଇ. ସି. ଏସ. ଅଫିସର, ସେ ଜେଲ ଦଣ୍ଡ ଭୋଗ କରିବା ଅପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର । କଶୋରୀକୁ ନ ଛାଡି ଲୁଚାଇ

ରଖିବେ ଶରଧନ—ସେଥିରେ ବା ଲାଭ କଣ ? ପାପ କେତେ ଧନ ଲଟ ରଖିପାରେ ? ଆଉ ଏକ ଉପାୟ—ତାକୁ ଜୀବନରେ ମାରି ଦେବା । ତା ହେଲେ କଥାଟା ପ୍ରକାଶ ପାଆନ୍ତା ନାହିଁ ; କିନ୍ତୁ ନାରୀ-ହତ୍ୟା ? କମ୍ ପାପ ନୁହେ !

ସଦାନନ୍ଦ ଅତ୍ୟାଚାରୀ, ଅବିଚାରୀ, ପାପାତ୍ମା—କିନ୍ତୁ ନାରୀହତ୍ୟା ରୂପ ମହାପାତକ ଅର୍ଜିବାକୁ ତାଙ୍କର ସାହସ ହେଲା ନାହିଁ । ସେ ବହୁତ ଭାବି ଚିନ୍ତି ସ୍ଥିର କଲେ, କୌଣସି ବିଶ୍ୱସ୍ତ ଲୋକ ଦ୍ୱାରା କିଶୋରୀକୁ କଲିକତା ପଠାଇଦେବେ । ସେଠାରେ ସେ ତାକୁ କୌଣସି ବେଶ୍ୟା ଘରେ ଛାଡ଼ିଦେଇ ଆସିବ । ଜଗନ୍ନାଥ ମଙ୍ଗରାଜ ପରି ଶତ୍ରୁର ଏହି ଉପଯୁକ୍ତ ଶାସ୍ତି ! ସେ କନ୍ୟାକୁ ଝୁରି ଝୁରି ଶେଷରେ ମରିବ । ଆଉ ଅନ୍ୟାୟରେ ଯେଉଁ ସବୁ ଧନ ସଞ୍ଚୟ କରିଛି, ତାକୁ ଭୂତ ଖାଇବେ ।

ସଦାନନ୍ଦ ଏହି ପ୍ରସ୍ତାବ କଲେ—କିଶୋରୀକୁ ତାର ବାପ ପାଖରେ ଛାଡ଼ି ଆସିବେ ବୋଲି ରଟନା କରି ତାକୁ ସବାରୀରେ ଧାନ-ମଣ୍ଡଳ ଷ୍ଟେସନ ପର୍ଯ୍ୟନ୍ତ ନେଇ ଯିବାକୁ ହେବ । ରାତି ଗାଡ଼ିରେ ତାଙ୍କର ଶାଳକ ଧନେଶ୍ୱର ପଟ୍ଟନାୟକ ସେଠାରୁ କଲିକତା ନେଇଯିବେ ।

ଦୋଳପୂର୍ଣ୍ଣିମା—ବର୍ଷ ମଧ୍ୟରେ ଗୋଟାଏ ଶୁଭଦିନ । ପାପାତ୍ମା ସଦାନନ୍ଦ ସେହି ପବିତ୍ର ଦିବସରେ ସରଳା ବାଳିକାର ଅମଙ୍ଗଳ କାମନା କରି ଧନେଶ୍ୱର ସହିତ କଲିକତା ବିଦାୟ କରିଦେଲେ ।

ଧନେଶ୍ୱର ଯେତେବେଳେ ଧର୍ମଶାଳାରେ ପହଞ୍ଚିଲେ, ସେତେ-ବେଳକୁ ରାତି ଦଶଟା । ଠିକ୍ ସନ୍ଧ୍ୟା ପୂର୍ବରୁ ଘର ଛାଡ଼ିଛନ୍ତି । ଚଉଦ ମାଇଲ ରାସ୍ତା ଅତିକ୍ରମ କରି ବେହେରାମାନେ ବଡ଼ କ୍ଳାନ୍ତ ହୋଇ

ପଡ଼ିଥିଲେ । ଆଜି କିଛି ଦୂର ଯାଇଥିଲେ ଧାନମଣ୍ଡଳ ଷ୍ଟେସନରେ ଜଳଯୋଗ କରିଥାନ୍ତେ ; କିନ୍ତୁ ସେମାନେ ଅନାହାରରେ ଆଉ ପାଦେ ମାତ୍ର ଅଗ୍ରସର ହେବାକୁ ରାଜି ହେଲେ ନାହିଁ । ବାଧ୍ୟ ହୋଇ ଧନେଶ୍ୱର ଧର୍ମଶାଳା ଗ୍ରାମରେ ଜଳଯୋଗ କରିବାର ବ୍ୟବସ୍ଥା କଲେ ।

ଧର୍ମଶାଳାରେ ଯେତେବେଳେ ସବାରି ରହିଲା, କିଶୋରୀ ଭାବିଲା ତାଙ୍କର ଦୁଆରେ ଆସି ପହଞ୍ଚିଗଲା ପରି ! ସେ ଧୀରେ ସବାରିର ଦରଜାଟି ଫାଙ୍କ କରି ଦେଖିଲା, ସବାରି କାହାର ଦୁଆରେ ଲାଗି ନାହିଁ—ମଝି ଦାଣ୍ଡରେ ଥୁଆ ହୋଇଛି । ସେ ଭଲ କରି ଚାହିଁଲା—ଚଉଦପରଗନା ଗାଁ ନୁହେ ସେ । ତାର ଚିରପରିଚିତ ଗାଁ ଦାଣ୍ଡ ସେ କଣ ଚିହ୍ନି ନାହିଁ ? ତା ମନରେ କେତେ ପ୍ରକାର ସନ୍ଦେହ ଜାତ ହେଲା । ସେ ଅଶ୍ରୁମୋଚନ କରୁ କରୁ ବ୍ୟାକୁଳରେ କହିଲା, "ପ୍ରଭୁ, ଦୀନବନ୍ଧୁ ! ରକ୍ଷା କର ।" ପର ମୁହୂର୍ତ୍ତରେ ସେ ଶୁଣିବାକୁ ପାଇଲା "ଷ୍ଟେସନ ଅଉ ମାଇଲ୍‌ଏ ବାଟ । ସେଇଠାରେ ଜଳଖିଆ କରିଥିଲେ ଭଲ ହୋଇ-ଥାନ୍ତା ।" ଧନେଶ୍ୱର ବୋଧ ହୁଏ ବେହେରାମାନଙ୍କୁ ଉଦ୍ଦେଶ୍ୟ କରି କହୁଥିଲେ । କଥା ଶୁଣି କିଶୋରୀର ସର୍ବାଙ୍ଗ ଥରି ଉଠିଲା । ଷ୍ଟେସନ୍ ଅଉ ମାଇଲ୍‌ଏ ବାଟ ? କେଉଁ ଷ୍ଟେସନ ଏ ? ଚଉଦପରଗନାର ଏତେ ନିକଟରେ ତ କୌଣସି ଷ୍ଟେସନ ନାହିଁ । ତେବେ ଏ ଗାଁର ନା କଣ ? କିଶୋରୀକୁ ସାରା ଜଗତଟା ପ୍ରହେଳିକା ପରି ବୋଧ ହେଲା । ସେ ପଣନ୍ତ କାନରେ ମୁହଁ ଢାଙ୍କି ପକାଇ ମନେ ମନେ କହିଲା, "ପ୍ରଭୁ, ଏ ଦସ୍ୟୁମାନଙ୍କ କବଳରୁ ରକ୍ଷା କର ।"

ବେହେରାମାନେ ଖାଇ ବସିଲେ, ଧନେଶ୍ୱର ଆସି ସବାରି ଦରଜା ଖୋଲି ଭିତରକୁ ଚାହିଁଲେ । କିଶୋରୀ ଶୋଇଥିଲା । ସେ ପୂର୍ବବତ୍ ଦରଜା ବନ୍ଦ କରି ଦେଇ ଚାଲିଗଲେ । କିଶୋରୀ ହୃଦୟରେ ସେତେବେଳେ ଯେଉଁ ପ୍ରଳୟ ପବନ ବହୁଥିଲା,

ସେଥିରେ କି ତାର ନିଦ୍ରା ହୁଏ ? ଧନେଶ୍ବର ଚାଲିଯିବା ପରେ ସେ ଧୀରେ ସବାସ୍ତ କବାଟ ଖୋଲି ବାହାରକୁ ଗୃହିଁଲି । ପୂର୍ବରେ ଯେଉଁ ସ୍ଥାନରେ ସବାସ୍ତ ଥିଲି, ଠିକ୍ ସେହି ସ୍ଥାନରେ ଅଛି । ସବାସ୍ତର ଅପର ପାର୍ଶ୍ବ କବାଟ ଫାଙ୍କ କରି ଦେଖିଲି, ବେହେରାମାନେ ଏକତ୍ର ବସି ଜଳଯୋଗ କରୁଛନ୍ତି । ସେମାନଙ୍କର ଅଳ୍ପ ଦୂରରେ ଅନ୍ୟ ଜଣେ ଭଦ୍ର ପରିଚ୍ଛଦଧାରୀ ଖଣ୍ଡିଏ ବାସନରେ କଣ ଚାଖୁଛନ୍ତି । ବୋଧହୁଏ ସେ ଜଳଯୋଗ କରିବାକୁ ଆରମ୍ଭ କରୁଛନ୍ତି । କଣୋସ୍ତ ଭାବିଲି—ଏପରି ସୁଯୋଗ ଆଉ ମିଳିବ ନାହିଁ । ସେ ଅତ୍ୟନ୍ତ ଭକ୍ତିର ସହିତ ଦୁଇ ହାତ ଯୋଡି ପ୍ରଭୁଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲି । ତାପରେ ସବାସ୍ତରୁ ଅସ୍ତେ ଓହ୍ଲାଇ ଆସିଲି । ସବାସ୍ତ ଗୋଟାଏ ଜୀର୍ଣ୍ଣ ଚଉରାକୁ ଲାଗି ରଖାଯାଇଥିଲି । କଣୋସ୍ତ ସେହି ଭଗ୍ନ ଚଉରାରୁ କେତେ ଖଣ୍ଡ ପଥର ନେଇ ଖୁବ୍ ସାବଧାନତାର ସହିତ ସବାସ୍ତ ଭିତରେ ରଖି ପୂର୍ବବତ୍ କବାଟ ବନ୍ଦ କରିଦେଲି । ତାପରେ ବେହେରାମାନଙ୍କ ଆଡ଼କୁ ଗୃହିଁଲି—ସେପର୍ଯ୍ୟନ୍ତ ସେମାନଙ୍କର ଆହାର ଶେଷ ହୋଇ ନାହିଁ । ସେ ଅଣ୍ଟେଇ ଅଣ୍ଟେଇ ଚଉରାର ଅପର ପାର୍ଶ୍ବକୁ ଗୃଲିଗଲି । ଦେଖିଲି, ସେଠାରେ ଗୃହସ୍ବାମୀର ବାଡ଼ି-ଭିତରକୁ ଗୋଟାଏ ଗଳି ବାଟ ଅଛି । ମନେ ମନେ ପ୍ରଭୁଙ୍କୁ ଧନ୍ୟବାଦ ଦେଇ ସେହି ପଥରେ ବାଡ଼ି ପାଖକୁ ଗୃଲିଯାଇ ଆତ୍ମଗୋପନ କଲି । ସର୍ବଶକ୍ତିମାନ୍ ପରମେଶ୍ବରଙ୍କର କୌଣସି କାର୍ଯ୍ୟ କଳନା ବା କଳ୍ପନା କରିବା ଭଳି ଶକ୍ତି ମାନବ ଦେହରେ ଅଛି କି ? ତାଙ୍କର ଅନୁକମ୍ପା ହେଲେ ପଙ୍ଗୁ ଅତି ଅକ୍ଳେଶରେ ଦୁରାରୋହ ଗିରିମାଳା ଲଙ୍ଘନ କରିପାରେ । କଣୋସ୍ତ ସହସା ଏପରି ଭାବରେ ସେମାନଙ୍କ କବଳରୁ ଖସିଯିବ ବୋଲି କଣ ପୂର୍ବରୁ ଭାବି ରଖିଥିଲି ? ଯାହାକୁ ରଖିବେ ଅନନ୍ତ—କି କରିପାରେ ବଳବନ୍ତ ?

ଜଳଯୋଗ ଶେଷ କରି ବେଡହେଡ଼ମାନେ ସବାଗ୍ରେ ଉଠାଇ ଷ୍ଟେସନକୁ ଗ୍ଭଲିଗଲେ । କିଶୋରୀ ସେହି ଗଳି ପଥରେ ଇଙ୍ଗିମାରି ଦେଖିଲା, ଦାଣ୍ଡରେ କେହି ନାହାନ୍ତି । ଗୃହସ୍ୱାମୀର ବାରି କବାଟରେ ଯାଇ ମୃଦୁ କରାଘାତ କଲା । ଗୃହସ୍ୱାମୀ ଦୟାନିଧି ପଟ୍ଟନାୟକ ଶୋଇବାକୁ ଯାଉଥିଲେ—ଶବ୍ଦ ଶୁଣି ଦ୍ୱାର ଫିଟାଇ ଦେଲେ । କିଶୋରୀ ତାଙ୍କର ପଦ ଦୁଇଟି ଦୁଇ ହାତରେ ଧରି ଲମ୍ବ ହୋଇ ତଳେ ପଡ଼ିଗଲା । କହିଲା, "ଆପଣ ମୋର ବାପ—ମୁଁ ଆପଣଙ୍କର ଝିଅ । ବଡ଼ ବିପଦରେ ପଡ଼ିଛି । ମୋତେ ରକ୍ଷା କରନ୍ତୁ ।" ଦୟାନିଧି ପଟ୍ଟନାୟକ ଦେଖିଲେ ଅନିନ୍ଦ୍ୟ ସୁନ୍ଦରୀ ତରୁଣୀଟିଏ । ପୋଷାକ ପରିଚ୍ଛଦରୁ ସଦ୍‌ବଂଶ-ସଂଭୂତ ପରି ଜଣାଯାଉଛି । ସେ କୋମଳ କଣ୍ଠରେ କହିଲେ, "ଭୟ କର ନାହିଁ ମା ! ତୋର ବିପଦ କଣ କହ ।" ବର୍ଷାରେ ଦୁଇ କୂଳଭରା ତଟିନୀ ପରି କିଶୋରୀର ନୟନଯୁଗଳରୁ ଅଜସ୍ର ଧାର ବହିବାକୁ ଲାଗିଲା । ସେ କିଛି କହି-ପାରିଲା ନାହିଁ । ଦୟାନିଧି ପଟ୍ଟନାୟକ ତାକୁ ତଳୁ ଉଠାଇ ନାନା ପ୍ରକାର ସାନ୍ତ୍ୱନାବାଣୀ ଶୁଣାଇ ଶୁଣାଇ ଗୃହମଧ୍ୟକୁ ଘେନିଗଲେ ।



## —ଦ୍ୱାଦଶ ପରିଚ୍ଛେଦ—

ରାଜକିଶୋର ତାଳଚେରରେ ବାର ଦିନ କାଳ ରହିଲେ । ବହୁ ଅର୍ଥ ବ୍ୟୟ କରି ବହୁ ଅନୁସନ୍ଧାନ କଲେ; ମାତ୍ର କିଶୋରୀର କୌଣସି ସନ୍ଧାନ ପାଇଲେ ନାହିଁ । ଗତ ଗ୍ଭରି ମାସ ମଧ୍ୟରେ ତାଳଚେର ରାଜା ସାହେବ ରାଣୀଙ୍କ ସହିତ ପୁରୀ ଯାଇଥିବାର ପ୍ରମାଣ ମଧ୍ୟ ପାଇଲେ ନାହିଁ । ତେବେ ମୋହନ ଦାସ କଣ ମିଛ କହିଲା ? ଗୁଲିଖୋର

ସେ—ଗୁଳିଆଙ୍କ ପକ୍ଷରେ ମିଥ୍ୟା କହିବା ଅସମ୍ଭବ କଣ ? କିନ୍ତୁ ହାରଟି ନିଶ୍ଚୟ କିଶୋରୀର,' ସେଥିରେ ତ ସନ୍ଦେହ ନାହିଁ । ତାହାହେଲେ ମୋହନ ଦାସ ଓ ତାହାର ସହଚରମାନେ କିଶୋରୀକୁ ମାରି ଦେଇ-ଥିବା ମଧ୍ୟ ଅସମ୍ଭବ ନୁହେ ।

ରାଜକିଶୋର ଭାବିଲେ, ବର୍ତ୍ତମାନ କର୍ତ୍ତବ୍ୟ କଣ ? ମୋହନ ଦାସକୁ ଗିରଫ କଲେ ସେ ଯେ ସତକଥା କହିବ, ସେପରି ତ ବିଶ୍ୱାସ ହେଉ ନାହିଁ । ହେମ ପାଖରେ ଯାହା କହିଛି କୋର୍ଟରେ ସେହି କଥା କହିଲେ ମଧ୍ୟ ତାକୁ ସଜା ହୋଇପାରେ । କିନ୍ତୁ କିଶୋରୀର ତ ଆଉ ଠିକ୍ ସମ୍ବାଦ ମିଳିବ ନାହିଁ । ନୈରାଶ୍ୟରେ ରାଜକିଶୋରଙ୍କର ହୃଦୟ ଭାଙ୍ଗି ପଡ଼ିଲା । କିନ୍ତୁ ତାଙ୍କ ହୃଦୟର ଅନ୍ତରତମ ପ୍ରଦେଶରୁ ତୀବ୍ର ସ୍ୱରରେ ବାଜି ଉଠିଲା—କିଶୋରୀ ମରି ନାହିଁ—ମରି ନାହିଁ—ଅନୁ-ସନ୍ଧାନ କଲେ ନିଶ୍ଚୟ ପାଇବ ।

ରାଜକିଶୋର ପୁରୀକୁ ଫେରିଯାଇ ହେମର ହାରଟି ଫେରାଇ-ଦେଲେ ଏବଂ ତାଙ୍କର ଶରୀର ଅସୁସ୍ଥ ଥିବା ହେତୁ ହାର ଫେରାଇ-ବାରେ ବିଳମ୍ବ ହେଲା ବୋଲି କ୍ଷମା ମାଗିଲେ । ପାଠକମାନଙ୍କର ମନେ ଥିବ, ସେ ଏକ ମାସ ଛୁଟି ନେଇଥିଲେ । ଛୁଟି ତାଙ୍କର ମଞ୍ଜୁର ହୋଇଥିଲା । ପନ୍ଦର ଦିନ ମାତ୍ର ଭୋଗ ହୋଇଛି । ବାକି ପନ୍ଦର ଦିନ ବିଶ୍ରାମ କରିବାକୁ ମନେ ମନେ ସ୍ଥିର କଲେ । କିନ୍ତୁ ପୁରୀରେ ଦିନେ ମାତ୍ର ରହିଛନ୍ତି, ସେଠାରେ ଆଉ ମନ ଲାଗିଲା ନାହିଁ । ତାଙ୍କର ବାଲ୍ୟବନ୍ଧୁ ଦୀନବନ୍ଧୁ ମିଶ୍ର ବୃନ୍ଦାବନଚୌକ ପୋଷ୍ଟ ଅଫିସରେ ପାର୍ଶଲ୍ କିରାଣୀ । ସେ କଟକ ଆସି ତାଙ୍କର ବସାରେ ପହଞ୍ଚିଲେ । ଦୀନବନ୍ଧୁ ମିଶ୍ର ଗଣେଶଘାଟ ନିକଟରେ ଗୋଟିଏ ଏକମହଲା ପକ୍କାଘର ଭଡ଼ା ନେଇ ଥାନ୍ତି । ଜ୍ୟେଷ୍ଠ ମାସ । କଟକରେ ବଡ଼ ଗରମ ପଡ଼ିଥାଏ ।

କିନ୍ତୁ ପକ୍କା ଉପରକୁ ଗଲେ କାଠଯୋଡ଼ୀର ଶୀକର-ସିକ୍ତ ସମୀରଣରେ ଦେହ ଶୀତେଇ ଉଠେ । ବଡ଼ ଆରାମ ବୋଧ ହୁଏ । ଦୀନବନ୍ଧୁ ମିଶ୍ରଙ୍କର ପକ୍କା ଉପରେ ଖଣ୍ଡିଏ ଗୃହଘର । ଦିବାଭାଗରେ ସେଠାକୁ ସୂର୍ଯ୍ୟଙ୍କର ତାପ ମଧ୍ୟ ବାଧେ ନାହିଁ । ସ୍ଥାନଟି ରାଜକିଶୋରଙ୍କୁ ବଡ଼ ଭଲ ବୋଧ ହେଲା । ସେ ଅବସରର ଅବଶିଷ୍ଟ ଦିନଗୁଡ଼ିକ ସେହିଠାରେ କଟାଇଦେବାକୁ ମନଃସ୍ଥ କଲେ ।

ରାଜକିଶୋରଙ୍କର କଟକରେ ରହିବାର ତିନି ଦିନ ହୋଇ-ଗଲାଣି । ସେ ଦିନ ମଧ୍ୟାହ୍ନ ଭୋଜନ ପରେ ଶୋଇଛନ୍ତି, ସ୍ୱପ୍ନ ଦେଖିଲେ—ଏକ ନିବିଡ଼ ଜଙ୍ଗଲର ମଧ୍ୟ ଭାଗରେ ଜୀର୍ଣ୍ଣ କୂପଟାଏ । ଜଣେ ଦୀର୍ଘାକୃତି ପୁରୁଷ କିଶୋରୀର ହାତ ଧରି ସେହି କୂପ ନିକଟକୁ ଘେନିଯାଇ କହିଲା "କହ ମୋ କଥାରେ ସ୍ୱୀକୃତ ହେବୁ କି ନାହିଁ ?" କିଶୋରୀ ଦୃଢ଼ ସ୍ୱରରେ କହିଲା "ନା—ତୋପରି ମୂର୍ଖ ପାଷଣ୍ଡ କଥାରେ ମୁଁ କୌଣସିମତେ ସ୍ୱୀକୃତ ହୋଇପାରିବି ନାହିଁ ।" ଦୀର୍ଘ-କାୟ ପୁରୁଷ ରୁଷ୍ଟ ହୋଇ କହିଲା "ତେବେ ତୋର ମୃତ୍ୟୁ ଅନିବାର୍ଯ୍ୟ ।" କିଶୋରୀ ଅଧିକର ଦୃଢ଼ କଣ୍ଠରେ କହିଲା "ସେ ବରଂ ଭଲ; କିନ୍ତୁ ନାରୀ ହୋଇ ନାରୀଧର୍ମରେ ଜଳାଞ୍ଜଳି ଦେବା ପାପରୁ ବଳି ଜଗତରେ ଆଉ କି ପାପ ଅଛି ?" ସେ ନୃଶଂସ ପୁରୁଷଟା ସଙ୍ଗେ ସଙ୍ଗେ କିଶୋରୀକୁ କୂପ ଭିତରକୁ ଠେଲିଦେଲା । କହିଲା "ପୁଣ୍ୟମୟି, ପୁଣ୍ୟକର୍ମର ଫଳ ଭୋଗକର !" ରାଜକିଶୋର ଚୀତ୍କାର କରି ଉଠିଲେ, ନିଦ୍ରା ଭାଙ୍ଗି-ଗଲା । ସେ ଆଖି ମଳି ଥରେ ଚତୁର୍ଦ୍ଦିଗକୁ ଚାହିଁଲେ, କେହି ନାହିଁ—ପକ୍କାଘର ଉପରି ଗୃହ ଘରଟି ପୂର୍ବପରି ରହିଛି । ସେ ଉଠି ବସିଲେ; ନାନା ପ୍ରକାର ଦୁଶ୍ଚିନ୍ତା ଆସି ତାଙ୍କୁ ଗ୍ରାସ କରି ବସିଲା । କିଶୋରୀ ବିଷୟରେ ସେ ଯେତେ ଭାବିବାକୁ ଲାଗିଲେ, ତାଙ୍କର ହୃଦୟଭିତରେ ସେତେ ଦୁଃଖାଗ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । କୌଣସି ଉପାୟରେ

ନିଜକୁ ସାନ୍ତ୍ୱନା ଦେଇ ନ ପାରି ସେ ବାହାରକୁ ବାହାରିଗଲେ । ବାହାରର ନାନା ପ୍ରକାର ଦୃଶ୍ୟମଧ୍ୟରେ ମନର ପରିବର୍ତ୍ତନ ଆସି-ପାରିବ ଅବା !

ସ୍କୁରିଟା ବାଜିଗଲାଣି । କଚେରି ଫାଟକରେ ଭାରି ଭିଡ଼ । ସେ ଭିଡଭିତରେ ଫେରିବାଲାମାନେ ନିଜ ନିଜ ଜିନିଷର ଗୁଣ ବର୍ଣ୍ଣନା କରି ଗ୍ରାହକମାନଙ୍କର ଦୃଷ୍ଟି ଆକର୍ଷଣ କରିବାରେ ଲାଗିଛନ୍ତି । ରାଜ-କିଶୋର ବୁଲି ବୁଲି ଦେଖିଲେ, ଜଣେ ଲୋକ ଗୋଟିଏ ପକେଟ ଘଣ୍ଟା ଧରି ଦେଖୁଛି । ଲୋକଟି ନିତାନ୍ତ ମଫସଲିଆ । ସେ ଘଣ୍ଟାଟି ଧରି ଯେପରି କୌତୁହଳପୂର୍ଣ୍ଣ ଦୃଷ୍ଟିରେ ନିରୀକ୍ଷଣ କରୁଥିଲା, ସେଥିରୁ ସହଜରେ ଜଣା ଯାଉଥିଲା, ତାର ଜୀବନରେ ଘଣ୍ଟା ଦେଖିବା ଏହି ପ୍ରଥମ । ସେ ଅପୂର୍ବଦର୍ଶନ ଲୋକଟିକୁ ଦେଖି ରାଜକିଶୋରଙ୍କର କୌତୂହଳ ବଢ଼ିଲା । ସେ ଟିକିଏ ଠିଆ ହୋଇଗଲେ । ପ୍ରାୟ ପାଞ୍ଚ ମିନିଟ ଧରି ଉତ୍ତମରୂପେ ପରୀକ୍ଷା କରି ଦେଖିଲା ପରେ ସେ ଲୋକଟି ଦୃଷ୍ଟି ଫେରାଇଲା । ରାଜକିଶୋରଙ୍କୁ ନିକଟରେ ଦେଖି କହିଲା, "ଦେଖିଲ ବାବୁ, ଏ ଘଡି ଭଲ ଅଛି ?" ରାଜକିଶୋର ଘଣ୍ଟାଟି ହାତକୁ ନେଇ ଦେଖିଲେ ଓଏଷ୍ଟ ଏଣ୍ଡ କମ୍ପାନିର ଘଣ୍ଟା—ଦାମ ନଅ ଦଶ ଟଙ୍କା ହେବ । ଅତି ଅଳ୍ପ ଦିନ ମାତ୍ର ବ୍ୟବହାର ହୋଇଛି । କହିଲେ "ହଁ, ଘଡି ଖୁବ୍ ଭଲ ଅଛି ।" ସେ ଲୋକଟି ଘଣ୍ଟା ହାତକୁ ନେଇ କହିଲା "ଏହାର ଦାମ୍ କେତେ ହେବ ?"

ରାଜକିଶୋର—କାହିଁକି ?

ସେ—ମୁଁ ଏହାକୁ କିଣିବି ଯେ !

ରାଜ—କିଏ ବିକୁଛି ?

ନିକଟରେ ଗୋଟିଏ ଲୋକ ଆଡ଼କୁ ଅଙ୍ଗୁଳିନିର୍ଦ୍ଦେଶ କରି ସେ କହିଲା, "ଏଇ ଲୋକ ବିକୁଛି ।"

ରାଜ—କେତେ ଦାମ କହୁଛନ୍ତି ସେ ?

ସେ—କହୁଛନ୍ତି ପାଞ୍ଚ ଟଙ୍କା ।

ରାଜ—ହଁ, ସେଇଆ ହେବ ।

ସେ—ସତ କହ ବାବୁ ! ମୁଁ ଘଡ଼ି ଫଡ଼ି ଚହ୍ନି ଜାଣେ ନା ! ବାପା ଦେଖି ଗାଳି ନ ଦଅନ୍ତୁ ।

ରାଜ—ତମ ବାପା କିଏସେ ?

ସେ—ଆପଣ ଚନ୍ଦ୍ରଧର ଖୁଣ୍ଟିଆଙ୍କ ନାଁ ଶୁଣିଥିବେ । ସେ ପରା ମୋ ବାପା । ଗୋପାଳ ପ୍ରହରାଜ ଓକିଲଙ୍କ ମୋହରିର ସେ । ଦୁଇମାସ ହେବ ତାଙ୍କୁ ଗୋଟିଏ ମେଣ୍ଢାମୁଣ୍ଡିଆ ବାଡ଼ି ପଗଡ଼ି ଦେଇଛନ୍ତି ଯେ—

ଅଯଥା କଥାଗୁଡ଼ାଏ ଶୁଣିବାକୁ ରାଜକିଶୋରଙ୍କୁ ଭଲ ଲାଗିଲା ନାହିଁ । ତା ଠାରୁ ଅବ୍ୟାହତି ପାଇବା ନିମିତ୍ତ "ହଁ, ମୁଁ ସବୁ ଜାଣେ । ବାପା ତମର ବିରକ୍ତ ହେବେ ନାହିଁ । ଅସଲ୍ ଘଡ଼ି ଏ ।" କହି ସେ ଅନ୍ୟତ୍ର ଚାଲିଗଲେ ।

ପୁରନ୍ ଲାଲଙ୍କର୍ ଅଳଙ୍କାର ଦୋକାନଟି ଠିକ୍ ବାଲୁବଜାର ଛକ ଉପରେ । ଦୋକାନଟି ନାନା ପ୍ରକାର ସୁଦୃଶ୍ୟ ଅଳଙ୍କାରରାଜିରେ ସୁସଜ୍ଜିତ । ଦେଖିଲେ ମନେ ହୁଏ, ପୁରାଣବର୍ଣ୍ଣିତ କୁବେରଭଣ୍ଡାର ମଧ୍ୟରେ ଖସି ପଡ଼ିଛନ୍ତି ପରା ! ସନ୍ଧ୍ୟା ସାଢ଼ଟା ହେବ । ଦୋକାନଟି ପେଟ୍ରୋମାକ୍ସ ଲାଇଟ୍‌ର ରଜତାଲୋକରେ ରଞ୍ଜିତ ହୋଇ ଅପୂର୍ବ ସୁନ୍ଦର, ଅପୂର୍ବ ମନୋହର ଛବି ଧାରଣ କରିଛି । ରାଜକିଶୋରଙ୍କର ଦୃଷ୍ଟି ସେହି ଦଗକୁ ଆକୃଷ୍ଟ ହେଲା । ସେ ରାସ୍ତାଉପରେ ଠିଆ ହୋଇ ଦୋକାନର ମନୋହାରିଣୀ ଛବି ଦେଖିବାକୁ ଲାଗିଲେ ।

ପୁରନ୍ ଲାଲ୍ ଗୋଟିଏ ବଡ ତକିଆକୁ ଆଉଜି ଛ ଇଞ୍ଚ ବହଳର ଗଦି ଉପରେ ବସି ଆରାମ କରୁଅଛନ୍ତି । ଅପର, ପାର୍ଶ୍ୱରେ କର୍ମଚାରୀ

ଦୁଇ ଜଣ ଗ୍ରାହକମାନଙ୍କୁ ଅଳଙ୍କାର ଦେଖାଇବାରେ ବ୍ୟସ୍ତ । ଜଣେ ଲୋକ ଗୋଟିଏ କଣ ପୁଡ଼ିଆ ଆଣି ପୂରନ୍ ଲାଲଙ୍କ ନିକଟରେ ଥୋଇ-ଦେଲା । ତା ପରେ କଣ କହିଲା, ରାଜକିଶୋର ଦୂରରେ ଥିବାରୁ ଶୁଣିପାରିଲେ ନାହିଁ । ପୂରନଲାଲ ସଙ୍ଗେ ସଙ୍ଗେ ଦଶ ଟଙ୍କାର ଦଶଟି ନୋଟ ଗଣି ତାର ହାତକୁ ବଢ଼ାଇଦେଲେ । ଲୋକଟି ନୋଟତକ ଲଗାରେ ବାନ୍ଧି ରାସ୍ତା ଉପରକୁ ଓହ୍ଲାଇ ପଡ଼ିଲା । ରାଜକିଶୋର ଦେଖିଲେ ସେହି ଲୋକ ସେ, ପାଞ୍ଚଟା ବେଳେ ଫାଟକ ପାଖରେ ଯେ ଜୁଆଚ ବିକି କରୁଥିଲା । ହଠାତ୍ ତାଙ୍କ ମନରେ କାହିଁକି ସନ୍ଦେହ ଜନ୍ମିଲା । ସେ ସେହି ଲୋକଟିର ଅନୁସରଣ କଲେ । ଦୁଇ ତିନିଟା ଦୋକାନ ପାର ହୋଇ ଯିବାପରେ ରାଜକିଶୋର ତାର ନିକଟବର୍ତ୍ତୀ ହୋଇ କହିଲେ "କହେ, କିଛି ଆମକୁ ଦେଲ ନାହିଁ ?" ସେ ଲୋକଟି ଅଶ୍ଚର୍ଯ୍ୟାନ୍ୱିତ ଭାବରେ ତାଙ୍କୁ ଚାହିଁବାକୁ ଲାଗିଲା । ରାଜକିଶୋର ତାର ଆଶ୍ଚର୍ଯ୍ୟ ହେବାର କାରଣ ବୁଝିପାରି କହିଲେ, "ବୁଝିପାରିଲୁ ନାହିଁ ? ତୁ ପରା ଘଡ଼ି ବିକି କରୁଛୁ ? ଆଜି ପାଞ୍ଚଟା ବେଳେ କଚେରୀ ପାଖରେ ଘଣ୍ଟା ବିକି କରୁଥିଲୁ ନା ତୁ ?"

"ହଁ ।"

"ମୋତେ ଗୋଟାଏ ଘଡ଼ି ଦେ—ଟଙ୍କା ଦେବି ।"

ଲୋକଟି ହସି ଉଠିଲା, କହିଲା, "ମୁଁ କହିଲି ସିନା ଆଉ କଣ । ଆପଣ ସେତେବେଳେ ଦେଖିଲେ, ନେଲେ ନାହିଁ ? ସେ ତ ବିକି ହୋଇଗଲା, ଆଉ ମୁଁ କେଉଁଠୁ ଆଣିବି ?"

"ସେ ବିକି ହୋଇଗଲା—ଗଲା । ମୋତେ ଆଉ ଗୋଟାଏ ଦେ ।"

"ନାଇଁ ବାବୁ, ମା ତ ସେଇ ଗୋଟିକ ଦେଇଥିଲେ ।"

"ମିଛ କହୁଛୁ କାହିଁକି ? ମୁଁ କଣ ଦାମ ଦେବି ନାହିଁ ?"

"ନାଇଁ ବାବୁ, ଘଣ ଅଛୁ, ମୁଁ ମିଛ କାହିଁକି କହିବି ?"

"ତୁ ଏହିକ୍ଷଣି ସେ ଅଳଙ୍କାର ଦୋକାନରେ ଦେଇ ଅସିଲୁ କଣ ?"

"ମିଛ କହିଲି ବୋଲି ସେଇଥିପାଇଁ କହୁଛନ୍ତି ? ତାଙ୍କୁ ବାବୁ ଦେଇଥିଲେ ନା ?"

"କେତେଟା ଘଣ୍ଟି ଦେଇଥିଲେ ?"

"ସେ ଘଣ୍ଟି ନୁହେ ।"

"ଅଉ ?"

"କଣ ମୁଁ ଜାଣି ନାହିଁ । ମୋତେ ଖାଲି ପୁଞ୍ଜୁଳାଟା ଦେଇ କହିଲେ 'ଯାଙ୍କୁ ନେଇଯା ପୁରନ ଲାଲଙ୍କୁ ଦେବୁ । ଅଉ କହିବୁ ସେ ଶଏଟା ଟଙ୍କା ଦେବେ' ।"

ବାବୁ କିଏ ଜାଣିବା ପାଇଁ ରାଜକିଶୋରଙ୍କର ଅକାଟ୍ୟ ଆଗ୍ରହ ହେଲା । ସେ ପଚାରିଲେ "ବାବୁ ? କେଉଁ ବାବୁ ?"

"ଆପଣ ଦୀନବନ୍ଧୁ ବାବୁଙ୍କ ବସାରେ ଅଛନ୍ତି, ଆମ ବାବୁଙ୍କୁ ଚିହ୍ନି ନାହାନ୍ତି ? ଦୀନବନ୍ଧୁ ବାବୁଙ୍କ ବସାକୁ ଲାଗି ସେ ଦୋତାଲା କୋଠାଟା ପରା ଆମର ।"

"ବାବୁଙ୍କ ନାଁ କଣ ?"

"ଦୟାନିଧି ବାବୁ ପରା କଲଟରରେ କାମ କରନ୍ତି ।"

"ତୋ ନାଁ କଣ ?"

"ମୋ ନାଁ ପାଣୁଆ । ତାଙ୍କ ଚାକର ମୁଁ ।"

"ବାଃ, ଏତେ ପାଖରେ ଅଛୁ, ମୁଁ ଚିହ୍ନି ନାହିଁ ତୋତେ ? ତୁ ମତେ କିପରି ଚିହ୍ନିଲୁ ମ ?"

"ଆଜିକି ତିନି ଦିନ ହେବ ଆପଣ ତାଙ୍କ ଘରେ ଆସି ଅଛନ୍ତି, ମୁଁ ଦେଖିଛି । ତାଙ୍କ ଘରେ କହୁଥିଲେ, ଆପଣ କଟକଁଠି ଦୀନବନ୍ଧୁ ବାବୁଙ୍କ ସଙ୍ଗାତ ।"

"ହଁ, ସେ ମୋର ସଙ୍ଗାତ । ତୁ ତ ମୋର ସବୁ ପରିଚୟ ପାଇ ସାରିଛୁ । ଆଚ୍ଛା, ସେ କଥା ଯାହା ହେଉ, ତୁ ସେ ଘଣ୍ଟା କେଉଁଠୁ ଆଣିଥିଲୁ କହିଲୁ ?"

"ମା ଦେଇଥିଲେ ପରା ।"

"କାର ସେ ଘଣ୍ଟା ? ବାବୁଙ୍କର ?"

"ନା, ବାବୁଙ୍କର ତ ସୁନାର ଘଣ୍ଟା । ସେ ସବୁବେଳେ ହାତରେ ବାନ୍ଧିଥାନ୍ତି । ତାର ଦାମ୍ ବାଳେ ବହୁତ ଟଙ୍କା ।"

"ମା ସେ ଘଣ୍ଟା କେଉଁଠୁ ଆଣିଥିଲେ ମ ?"

"କେଜାଣି ।"

"ମୋତେ ଗୋଟିଏ ଘଣ୍ଟା ଦିଅନ୍ତୁ ପାଣ୍ଡୁ ।"

"ମୁଁ ପଚାରିବି, ଯଦି ଆଉ ଘଣ୍ଟା ଥିବ ତା ହେଲେ—"

"ଠିକ୍ ଏ ମନେ କରି ବୁଝିବୁ । ଘଣ୍ଟାର ଉଚିତ ଦାମ ଯାହା ହେବ ଦେବି । ତା ଛଡ଼ା ତୋତେ ମଧ୍ୟ ବକ୍‌ସିସ୍ ମିଳିବ ।"

"ହଉ ଆଜ୍ଞା !" କହି ପାଣ୍ଡୁଆ ଚାଲିଗଲା । ରାଜକିଶୋର କଣ ଭାବି ପୁଣି ତାକୁ ଡାକିଲେ । ସେ ଫେରି ଆସିଲା । ରାଜକିଶୋର କହିଲେ "ପାଣ୍ଡୁ, ତମ ବାବୁଙ୍କର ପୁରନଲାଲ୍ ସଙ୍ଗରେ ବେଶ୍ ଭାବ-ଲଭ ଅଛି ବୋଧ ହୁଏ ?"

"ଓଃ, ଭାରି ସାଙ୍ଗ ନା । ବାବୁ ଯେମିତି କଚେରିରୁ ଆସିବେ, ଜଳଖିଆ ଗଣ୍ଡାଏ କରିଦେଇ ଅଳଙ୍କାର ଦୋକାନରେ ହାଜର ।"

"ଅଗଲୁ ତା ହେଲେ ତାଙ୍କର ଟଙ୍କା ପଇସା ଧାର ଉଧାର ଦଆ ନଆ ଚାଲିଚ ?"

"ସେ କଥା ମୁଁ କହିପାରିବ ନାହିଁ ।"

"ଅଜି ତ ଶଏ ଟଙ୍କା ନେଇ ଯାଉଚୁ—ଏମିତ ଅଉ କେତେ ଥର ନେଇ ନ ଥିବୁ ?"

"ନା—ବାବୁ ତ ସବୁ ଦନ ନକେ ଅସନ୍ତି । ଅଜି ତାଙ୍କର କାମ ଅଛି କ କଣ, ମୋତେ ପଠାଇଲେ ନା ।"

"ହଉ ଯା, ମୋ କଥା ଭୁଲିବୁ ନାହିଁଟି । ଯେମିତ ହେଲେ ତାଲ୍ ଏତକ ବେଳକୁ ଅଣି ଦେବୁ । ନେ ଏ ଟଙ୍କା ଦଟା ନେ, ତୋତେ ବକସିସ ଦଅଗଲି ।" ରାଜକିଶୋର ଟଙ୍କା ଦଟା ବଢ଼ାଇ-ଦେଲେ; ଗ୍ରହଣ କରିବାକୁ ପାଣୁଅର କିଛି ଇଚ୍ଛା ହେଲି ନାହିଁ । ଯଦ ମାଙ୍କ ପାଖରେ ଅଉ ଘଣ୍ଟ ନ ଥାଏ । ସେ ସଙ୍କୁଚିତ ଭାବରେ କହିଲି "ନାଇଁ ବାବୁ, ରଖନ୍ତୁ । ମାଲ୍ ନେଲେ ଦେବେ ।"

"ଅରେ, ସେତେବେଳେ ତ ବକସିସ ପାଇବୁ ନିଶ୍ଚୟ; ଅବକା ଏ ଟଙ୍କା ଦଟା ନେଇ ଯା । ଗ୍ରିକର ଲୋକ—ତୁ ଦୟାନଧି ବାବୁଙ୍କ ଗ୍ରିକର, କଣ ଅମର ନୋହୁ ?"

ପାଣୁଅ ଟଙ୍କା ଦୁଇଟି ନେଇ ଚାଲିଗଲି । ବାଟଯାକ କେତେ କଣ ଭାବିବାକୁ ଲଗିଲି । ସତେ ଏପରି ବାବୁ ସେ ତ କେବେ ହେଲେ ଦେଖି ନାହିଁ । ଦୁଇ ପଦ କଥାବାର୍ତ୍ତା କରୁ କରୁ ଦୁଇ ଟଙ୍କା ବକସିସ୍ । ଭାବିଲି, ଗ୍ରିକରି କରିବ ତ ଏମିତ ବାବୁଙ୍କ ପାଖରେ ଗ୍ରିକରି କରିବ । ଅଉ ଏ ଅରକ୍ଷିତଙ୍କ ପାଖେ ରହି ଯାଉଣି ଅସୁଣି "ବଦମାସ" "ପାଜି" "ଚୋର" ଶୁଣି ଶୁଣି ଦେହ ପଥର ହୋଇଗଲିଣି । ରାଜ-କିଶୋରଙ୍କର ଏ ଅଯାଚିତ ଅନୁଗ୍ରହରେ ପାଣୁଅ ମନେ ମନେ ତାଙ୍କ

ପ୍ରତି ଅତ୍ୟନ୍ତ ଅକୃଷ୍ଟ ହୋଇପଡ଼ିଲା । ପ୍ରତିଜ୍ଞା କଲା—କାଲି ନିଶ୍ଚୟ ଘଡ଼ିଟି ଦେଇ ବାବୁଙ୍କୁ ସନ୍ତୁଷ୍ଟ କରିବ ।

ପରଦିନ ଦିନ ତିନିଟା ସମୟରେ ରାଜକିଶୋର ତାଙ୍କର ବୋଠଘରେ ବସି କାଠଯୋଡ଼ର ଶୀକର-ସିକ୍ତ ଶୀତଳ ବାୟୁ ସେବନ କରୁଛନ୍ତି, ପାଣୁଆ ଆସି ତାଙ୍କ ନିକଟରେ ଉପସ୍ଥିତ ହେଲା । ରାଜକିଶୋର ପଚାରିଲେ "କିରେ ପାଣୁ , ଆଣିଛୁ ?" ପାଣୁଆ ନିତାନ୍ତ ସଙ୍କୁଚିତ ଭାବରେ କହିଲା "ନାଇଁ ଆଜ୍ଞା, ଆଜି ନାହିଁ ।" ରାଜକିଶୋର ଦେଖିଲେ ତାର ମୁହଁରେ ବଡ଼ ବିମର୍ଷ ଭାବ । କହିଲେ "କିରେ, ତୁ ଅଜି ଖାଇ ନାହୁଁ କି ? ତୋର ମୁହଁ କାହିଁକି ଶୁଖିଲା ଦିଶୁଛି ?"

ପାଣୁଆ ଇତସ୍ତତଃ କରିବାକୁ ଲାଗିଲା ।

"ଆଜି କିଣି ମୋ ଜିନିଷଟା ଆଣିପାରିଲୁ ନାହିଁ ବୋଲି ତୋ ମନରେ କଷ୍ଟ ହେଉଛି ?" ରାଜକିଶୋର ଉଚ୍ଚ ହାସ୍ୟ କରି ଉଠିଲେ, କହିଲେ "ନାହିଁ ତ ନାହିଁ, ସେଥିପାଇଁ ଏତେ ଦୁଃଖିତ କାହିଁକି ?"

ଘଡ଼ି ନ ପାଇଲେ ବାବୁ ବିରକ୍ତ ହେବେ, ଏହି ଆଶଙ୍କାରେ ପାଣୁଆର ମୁହଁଟା ଶୁଖି ଯାଇଥିଲା ; କିନ୍ତୁ ବାବୁଙ୍କର ବିପରୀତ ଭାବ ଦେଖି ତାର ଆଶଙ୍କା ଦୂର ହୋଇଗଲା । ସେ ବାବୁଙ୍କୁ ସ୍ନେହ-ସ୍ନିଗ୍ଧ ଦୃଷ୍ଟିରେ ଚାହିଁ କହିଲା "ସେଇ କଥା କହିବାକୁ ଆସିଥିଲି, ଯାଉଛି ବଜାରକୁ ଯିବି ପୁଣି ।"

"ହଉ ଯା, ମଝିରେ ମଝିରେ ଟିକିଏ ଆସୁଥିବୁ । ତୋ ହାତରେ ସେ କିଣି କରେ ?"

ପାଣୁଆ ଗୋଟିଏ କ୍ଷୁଦ୍ର କାଗଜଖୋଳ ରାଜକିଶୋରଙ୍କ ଆଗରେ ଥୋଇ କହିଲା "ମା ଏ ମୁଦିଟି ବିକିବାକୁ ଦେଇଛନ୍ତି ।" ରାଜକିଶୋର ଖୋଲି ଦେଖିଲେ, ଅଧଭରି ସୁନାର ମୁଦିଟିଏ । ପଚାରିଲେ "ଏହାର ଦାମ କେତେ ?"

"କହୁଛନ୍ତି ଦଶ ଟଙ୍କା ।"

ରାଜକିଶୋରଙ୍କର ମନରେ ବଡ଼ ସନ୍ଦେହ ହେଲା । ସେ ଗତ ରାତିରେ ତାଙ୍କର ବନ୍ଧୁ ଘାନବନ୍ଧୁଙ୍କ ଠାରୁ ଦୟାନିଧି ବାବୁଙ୍କ ଇତିବୃତ୍ତ ଅବଗତ ହୋଇଛନ୍ତି ।

ଦୟାନିଧି ବାବୁ କଲେକ୍ଟରୀରେ ସିରସ୍ତାଦାର କାମ କରନ୍ତି, ଦରମା ଟ ୨୦୦୯; ତାଙ୍କର ସ୍ତ୍ରୀ ଗୋଟାଏ ସୁନା ମୁଦି ଗୃହକର ହାତରେ ବିକିବାକୁ ଦେଇଛନ୍ତି—ସେ ପୁଣି ପନ୍ଦର ଟଙ୍କା ସ୍ଥଳେ ଦଶ ଟଙ୍କାରେ ବିକ୍ରି ହେବ । କାଲି ଗୋଟାଏ ଦଶ ଟଙ୍କାର ଘଣ୍ଟା ପାଞ୍ଚ ଟଙ୍କାରେ ବନ୍ଧା ହୋଇଅଛି । ଏହାର କାରଣ କଣ ?

ପାଣୁଆ କହିଲା "ବାବୁ, ମୁଁ ଆସୁଛି । ଅନ୍ୟର ଟିକିଏ କାମ ଅଛି । ବାବୁ ଏହିକ୍ଷଣି କଚେରୀରୁ ଆସିଯିବେ ।"

"ମା କଣ ଏ ମୁଦିକୁ ଲୁଚାଇ କରି ବନ୍ଧା କରିବାକୁ ଦେଇଛନ୍ତି ?"

ପାଣୁଆ ଇତସ୍ତତଃ କରିବାକୁ ଲାଗିଲା । ରାଜକିଶୋର କହିଲେ "କିରେ, ମୋତେ କଣ ଅବିଶ୍ୱାସ କରୁଛୁ ? ମୁଁ କହିବି ନାହିଁ ।" ଲଜ୍ଜାରେ ପାଣୁଆ ମୁହଁ ଲାଲ ହୋଇଗଲା ।

ଯେଉଁ ବାବୁ ଦୁଇ ପଦ କଥା କହି ଦୁଇ ଟଙ୍କା ବକ୍‌ସିସ୍ ଦିଅନ୍ତି, ତାଙ୍କ ପାଖରେ ଗୋଟାଏ ସାମାନ୍ୟ କଥା ଗୋପନ ରଖିବା ନିତାନ୍ତ ଅବିବେକର କାର୍ଯ୍ୟ । ସେ ଅପ୍ରତିଭ ହୋଇ କହିଲା, "ହଁ ବାବୁ, ମା ନାହିଁ କରିଛନ୍ତି ବାବୁଙ୍କୁ କହିବାକୁ ।"

ରାଜକିଶୋର ହସି ହସି କହିଲେ, "ହେଁ ଲେ ତା ମୋ ପାଖରେ ଲୁଚାଉଛୁ—ମୁଁ କଣ ତମ ବାବୁଙ୍କ ପାଖରେ କହି ଦେଉଛି ?" ତା

ପରେ ମନିବ୍ୟାଗ ଫିଟାଇ ବାରଟା ଟଙ୍କା ପାଣୁଆ ହାତକୁ ବଢ଼ାଇ ଦେଲେ । କହିଲେ "ମୁଁ ଏ ମୁଦ ରଖିଲି । ନେ, ମୁଦର ଦାମ୍ ଦଶ ଟଙ୍କା ଆଉ ତୋର ବକ୍‌ସିସ୍ ଦୁଇ ଟଙ୍କା ।"

ପାଣୁଆ ଅଶ୍ରୁପ୍ଲାବିତ ଭାବରେ କହିଲା "ଏ କଣ ଆଜ୍ଞା, ଭାଲ୍ ସର୍ ବକ୍‌ସିସ୍ ଦେଇଥିଲେ !"

"ଆରେ, ଭାଲ୍ କଥା ଆଜକି ପୁରୁଣା ହୋଇଗଲାଣି ପରା । ଯା, ସଞ୍ଜବେଳେ ଫୁରୁସତ ପାଇଲେ ଏଣେ ଟିକିଏ ଆସିବୁ ।"

ପାଣୁଆ ମନେ ମନେ ରାଜକିଶୋରଙ୍କର ଦୀର୍ଘାୟୁ କାମନା କରୁ କରୁ ଅନ୍ତର୍ହିତ ହେଲା ।



## —ତ୍ରୟୋଦଶ ପରିଚ୍ଛେଦ—

ରାତ୍ରି ଭୋଜନ କରୁ କରୁ ରାଜକିଶୋର ତାଙ୍କର ବନ୍ଧୁ ଦୀନବନ୍ଧୁଙ୍କୁ କହିଲେ "ତମେ ପରା କହୁଥିଲ ଦୟାନିଧି ବାବୁଙ୍କର ସ୍ତ୍ରୀର ବର୍ଷର ଗୋଟିଏ ମାତ୍ର ପୁତ୍ର ଭିନ୍ନ ଆଉ ସନ୍ତାନ ସନ୍ତତି କିଛି ନାହିଁ ? ଆଜି ତ ମୁଁ ଶୁଣିଲି ପନ୍ଦର ଷୋଳ ବର୍ଷର ଗୋଟିଏ ଯୁବତୀ ଝିଅ ଅଛି ।" ଦୀନବନ୍ଧୁ ବିସ୍ମିତ ହୋଇ କହିଲେ "କିଏ କହିଲା ?"

"ଭୂତ କହିଲା—ତମେ ସେଥିରୁ କଣ ପାଇବ ? ତାଙ୍କର ପନ୍ଦର ଷୋଳ ବର୍ଷର ଗୋଟିଏ ଝିଅ ଥିବା କଥା ତମେ ଜାଣ ନାହିଁ ?"

ଦୀନବନ୍ଧୁ ଟିକିଏ ଚିନ୍ତା କରି କହିଲେ, "ହଁ, ହଁ, ସେ ତ ତାଙ୍କର ଝିଅ ନୁହେ । ବର୍ଷେ ହେବ ସେ କେଉଁଠୁ ଯେନ ଆସିଛନ୍ତି ।"

"ଦେଖିଛ ତମେ ସେ ଝିଅକୁ ?"

"ନା, ମୋର ସ୍ତ୍ରୀ ସୁଦ୍ଧା ଦେଖି ନାହାନ୍ତି, ମୁଁ ଦେଖିବି କଣ ? କହୁଛନ୍ତି ସେ ପାଗଳୀ । ସେଥିପାଇଁ ତାକୁ ସବୁବେଳେ ଗୋଟାଏ ଅଲଗା ଘରେ ବନ୍ଦ କରି ରଖିଛନ୍ତି—ବାହାର ଲୋକ କେହି ତାକୁ ଦେଖନ୍ତି ନାହିଁ ।"

"କାରଣ କଣ ?"

"କହନ୍ତି—ବାହାର ଲୋକ ଦେଖିଲେ ସେ କାନ୍ଦେ । ସମୟ ସମୟରେ କାମୁଡ଼ି ଗୋଡ଼ାଏ । ଏକୁଟିଆରେ ଅଲଗା ଘରେ ରହିବାରୁ ତାର ଅନେକ ପରିବର୍ତ୍ତନ ଦେଖାଯାଉଛି । ସେଥିପାଇଁ ତାକୁ କାହାରି ସହିତ ମିଳାମିଶା କରିବାକୁ ଦଅନ୍ତି ନାହିଁ ।"

"ଆଚ୍ଛା, ସେ ବାବୁ-ବାବୁଆଣୀଙ୍କ ଭିନ୍ନ ଆଉ କେବେ କେହି ତାକୁ ଦେଖି ନାହାନ୍ତି ?"

"କେଜାଣେ ବାବୁ, ଏତେ ଖବର ମୁଁ କହିପାରିବି ନାହିଁ । କାହିଁକି ? ତା ପାଇଁ ମୋର ଏତେ ମୁଣ୍ଡବ୍ୟଥା କାହିଁକି ?"

ରାଜକିଶୋର କିଛି କହିଲେ ନାହିଁ ।

"ସତେ ଭାଇ, ଗୋଟାଏ ଭଲ କଥା ମନେ ପଡ଼ିଲା" କହି ଦୀନବନ୍ଧୁ ହାଃ-ହାଃ ହସି ଉଠିଲେ । ରାଜକିଶୋର ହସିବାର କାରଣ ବୁଝି ନ ପାରି ଜିଜ୍ଞାସୁ ଦୃଷ୍ଟିରେ ତାଙ୍କ ମୁହଁକୁ ଚାହିଁଲେ । ଦୀନବନ୍ଧୁ ରହସ୍ୟ କରି କହିଲେ "ତାଙ୍କର ଚାକର ପାଣୁଆ କହୁଥିଲା ସେ ଭାରି ସୁନ୍ଦରୀ—ସତେ ଯେପରି ସ୍ୱର୍ଗର ଅପ୍‌ସରା ! ବୟସ ପନ୍ଦର ଷୋଳ ବୋଲି ତ ତମେ ଜାଣିଛ । ଆଉ ଖୋଜିବାର ବିଷୟ କଣ ଅଛି ? ଗୁଣ ? ଗୁଣ ନ ଥିଲେ ବି ତମପରି ଗୁଣୀ ଲୋକ ପାଖରେ ସେ ଅଭାବ ରହିବ ନାହିଁ ।" ପୁଣି ଉଚ୍ଚହାସ୍ୟ କରିବାକୁ ଲାଗିଲେ । ରାଜକିଶୋର କହିଲେ "ପାଗଳଙ୍କ ପରି କଣ ନିଜେ ନିଜେ ହସି ଯାଉଛ ? ମୁଁ ଯେ କିଛି ବୁଝି ପାରୁ ନାହିଁ ।"

"ପ୍ରକୃତରେ ଆନନ୍ଦରେ ମୁଁ ପାଗଳ ହୋଇଗଲିଣି । ଏତେ-ଗୁଡାଏ ଆନନ୍ଦ ଉପଭୋଗ କଲେ କିଏ ବା ପାଗଳ ନ ହେବ ? ବୁଝି ପାରୁନା ? ମୋ କହିବାର ଉଦ୍ଦେଶ୍ୟ କଣ କି—ତମେ ଯୁବକ, ସେ ମଧ୍ୟ ଯୁବତୀ, ତମେ ଏକାକୀ ସେ ବି ଏକା, ତମେ ଯେଉଁ କାରଣରୁ ଚାକିରି ଛାଡ଼ି ପାଗଳ ହୋଇ ବୁଲୁଛ, ସେ ବୋଧହୁଏ ସେହି କାରଣରୁ ପାଗଳିନୀ ହୋଇଛନ୍ତି । ଦୁଇ ଜଣଙ୍କର ମିଳନ ହୋଇଗଲେ ଠିକ୍ ମଣି କାଞ୍ଚନର ସଂଯୋଗ କାହିଁକି, କୁସୁମ ମୂଳିରେ କଣ୍ଟା ପିଅଜର ଯୋଗ ହୁଅନ୍ତା ପରା ! ତାପରେ ସେ ବର୍ତ୍ତମାନ ସିରସ୍ତାଦାରଙ୍କ ପାଳିତା କନ୍ୟା । ସିରସ୍ତାଦାରଙ୍କ ପରି ବଡ଼ ଲୋକ ସହିତ ବନ୍ଧୁ ବାନ୍ଧବୀ କଣ କମ୍ ସୌଭାଗ୍ୟର କଥା ?" ରାଜକିଶୋର ମଧ୍ୟ ସେହିପରି ରହସ୍ୟ କରି କହିଲେ "ଭାଇ ! ଅନୁଗ୍ରହ କରି ଯଦି ସେତକ କରାଇପାରନ୍ତ, ତେବେ ଚିରଜୀବନ ମୁଁ ତମ ପାଖରେ କୃତଜ୍ଞତା-ପାଶରେ ବନ୍ଧା ରହନ୍ତି ପରା ! ତମେ ମୋର ଦୁଃଖକୁ ନିଜ ହୃଦୟରେ ଅନୁଭବ କରି ପାରୁଛ । ସେଥିପାଇଁ ମୁଁ ଅନ୍ତରର ସହିତ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ । ବନ୍ଧୁ ନ ହେଲେ କି ବନ୍ଧୁର ଦୁଃଖ ବୁଝେ ?"

"ତମ ଧନ୍ୟବାଦକୁ ମୁଁ ଅନ୍ତରର ସହିତ ଗ୍ରହଣ କଲି ; କିନ୍ତୁ କୃତଜ୍ଞତା-ପାଶରେ ବାନ୍ଧି ରଖିବାର କ୍ଷମତା ବନ୍ଧୁର ନାହିଁ । ବନ୍ଧୁଙ୍କ ବାନ୍ଧବୀ ଅନୁଗ୍ରହ କଲେ ଅଚିରେ ତମର ଅଭୀଷ୍ଟ ସିଦ୍ଧି ହେବାର ସମ୍ଭାବନା । ତେଣୁ ତମେ କାଲିଠାରୁ ସେହି କାମନାପୂର୍ତ୍ତିକାରିଣୀ ଦେବୀଙ୍କର ଆରାଧନା କର ।"

"ଅଚ୍ଛା, କାଲିଠାରୁ ତାହାହିଁ କରିବାକୁ ହେବ ।"

ସିରସ୍ତାଦାରଙ୍କ ବିଷୟରେ ରାଜକିଶୋର ଯେମିତି ଭାବିବାକୁ ଲାଗିଲେ, ତାଙ୍କର ସନ୍ଦେହ ସେହି ପରିମାଣରେ ବୃଦ୍ଧି ପାଇବାକୁ ଲାଗିଲା । ସିରସ୍ତାଦାରଙ୍କ ପତ୍ନୀ ସ୍ୱାମୀକୁ ଲୁଚାଇ ଚାକରଦ୍ୱାରା ଘଣ୍ଟ ଏବଂ

ମୃଦ ବକ୍ରୟ କରିବା,ଅଳଙ୍କାର ଦୋକାନୀ ପୂରନଲାଲ ସହିତ ସିରସ୍ତା-ଦାରଙ୍କର ଘନିଷ୍ଠତା ଓ ଷୋଡ଼ଶବର୍ଷୀୟା ପାଗଳୀଟି ତାଙ୍କ ଅନ୍ତଃ-ପୁରରେ ବନ୍ଦିନୀ—ଏ ସମସ୍ତ ତାଙ୍କୁ ଗୋଟାଏ ଭେଳକିବିଦ୍ୟା କୌଶଳପରି ବଡ଼ ରହସ୍ୟମୟ ବୋଧ ହେଲା ।

ସିରସ୍ତାଦାର—ଦୁଇଶ ଟଙ୍କା ବେତନ ପାନ୍ତି, ସରକାରଙ୍କର ଜଣେ ବିଶିଷ୍ଟ କର୍ମଚାରୀ—ସ୍ୱର୍ଣ ଅଳଙ୍କାର ଦୋକାନୀଟା ସହିତ ତାଙ୍କର ଏଡ଼େ ସଦ୍ଭାବ, ଏତେ ଘନିଷ୍ଠତା କାହିଁକି ? ସ୍ତ୍ରୀ ଲୋକମାନେ ସାଧାରଣତଃ ଅଳଙ୍କାରପ୍ରିୟ—ନାନା କୌଶଳରେ ସ୍ୱାମୀମାନଙ୍କ ମନ ଭୁଲାଇ କିପରି ପାଞ୍ଚ ପ୍ରକାର ଅଳଙ୍କାର ପିନ୍ଧିବେ, ସେଥିପାଇଁ ସର୍ବଦା ଚେଷ୍ଟା କରନ୍ତି—କିନ୍ତୁ ସିରସ୍ତାଦାରଙ୍କର ପତ୍ନୀ ଅଳଙ୍କାର ବିକୀ କରୁ-ଛନ୍ତି ! ଉଦ୍ଦେଶ୍ୟ କଣ ? ଘଣ୍ଟି ସେ ପାଇଲେ କେଉଁଠୁ ?

ପୁଣି ଗୋଟାଏ ପାଗଳୀ—ସେ ଅଜକୁ ବର୍ଷେ ହେଲା ତାଙ୍କ ଘରେ ସ୍ଥାନ ପାଇଛି । ତାହା ଦ୍ୱାରା ତାଙ୍କର କି ଉପକାର ସାଧିତ ହେଉଛି ? ତାର ଜାତି ଗୋତ୍ର ଜଣା ନାହିଁ । ରାସ୍ତାରେ ବୁଲୁଥିଲା, ଏ ଦେଖି ନେଇ ଅସିଲେ । ସେ କଣ ସମ୍ଭବ ? ଅଜ୍ଞାତକୁଳଶୀଳ ସ୍ତ୍ରୀଟାକୁ ସିରସ୍ତାଦାରଙ୍କ ପରି ବିଚକ୍ଷଣ ଲୋକ ନିଜର ଅନ୍ତଃପୁରରେ ସ୍ଥାନ ଦିଅନ୍ତେ ? ହଁ, ତାର ଦୁରବସ୍ଥା ଦେଖି ଦୟା ହୋଇଥିବ, ନେଇ ଅସି ପାରନ୍ତି ; କିନ୍ତୁ ତାର ଅବସ୍ଥା ପରିବର୍ତ୍ତନ ଦିଗରେ ତ କୌଣସି ଚେଷ୍ଟା ନାହିଁ । ପାଗଳୀକୁ ଭଲ କରିବା ପାଇଁ ବୈଦ୍ୟ, ଡାକ୍ତର ବା ଗୁଣିଆ ଲଗାଇବା ଦୂରେ ଥାଉ, ବାହାର ଲୋକେ ତାର ଛାୟା ସୁଦ୍ଧା ଦେଖିବାକୁ ପାଉ ନାହାନ୍ତି । ନିଶ୍ଚୟ ଏଥିରେ କିଛି ଗୂଢ଼ ରହସ୍ୟ ଅଛି । ତେବେ କି ଉପାୟରେ ସେ ରହସ୍ୟ ଭେଦ କରାଯାଇ ପାରେ ?

ମୂର୍ଖ ହୃଦୟରେ ସୂଚୀପତ୍ର । ରାଜକିଶୋର ଏକ ବର୍ଷ କାଳ ପୋଲିଶ ବିଭାଗରେ କାର୍ଯ୍ୟ କରି ସେହି ସୂଚୀପତ୍ର ପାଠ କୌଶଳ ଶିକ୍ଷା କରିବାକୁ କେତେକ ସୁଯୋଗ ପାଇ ପାରିଥିଲେ । ସେ ସିରସ୍ତା-ଦାରଙ୍କୁ ଉତ୍ତମରୂପେ ଲକ୍ଷ୍ୟ କରି ବୁଝିପାରିଲେ, ସିରସ୍ତାଦାର ବୃଦ୍ଧ ଓ ଶିକ୍ଷିତ ହେଲେହେଁ କ୍ରୂରତା, କପଟତା, ପାଶବିକତା ପ୍ରଭୃତି ଅମାନୁଷିକ ଉପାଦାନରେ ଯେପରି ତାଙ୍କର ଶରୀରଟି ଗଢ଼ା । କ୍ରମେ ତାଙ୍କର କୌତୂହଳ ଉଦ୍ଦୀପ୍ତ ହେବାକୁ ଲଗିଲା । ସମସ୍ତ କର୍ମ୍ମ ପରିତ୍ୟାଗ କରି ସେ ସିରସ୍ତାଦାରଙ୍କର ଗତିବିଧି ପର୍ଯ୍ୟବେକ୍ଷଣ କରିବାରେ ବ୍ରତୀ ହେଲେ ।

ରାଜକିଶୋରଙ୍କଠାରେ ଗୋଇନ୍ଦା ପୋଲିଶର ବହୁତ ଗୁଣ କେତୋଟି ଥିଲା । ସେ ବିଭିନ୍ନ ପ୍ରକାର ବେଶରେ ନିଜକୁ ସଜ୍ଜିତ କରି ପାରୁଥିଲେ ଏବଂ ଏକାଧିକ ପ୍ରକାରରେ ନିଜର କଣ୍ଠସ୍ୱର ପରିବର୍ତ୍ତନ କରିବାରେ ଅଭ୍ୟସ୍ତ ଥିଲେ ।

ସେ ଦିନ ସନ୍ଧ୍ୟାରେ ସିରସ୍ତାଦାର ବାବୁ ବସାରୁ ବାହାରିଯିବାର ପର ମୁହୂର୍ତ୍ତରେ ରାଜକିଶୋର ନିଜର ପୋଷାକ ପରିବର୍ତ୍ତନ କରି ମୁସଲମାନ ବେଶରେ ବାଲୁବଜାର ଅଡ଼କୁ ଗଲେ ।

ପୁରନଲାଲ ତକିଆକୁ ଡେସ ଦେଇ ବସିଛି । ସିରସ୍ତାଦାର ବାବୁ ତା ପାଖରେ ବସି ଧୀରେ ଧୀରେ କଣ କଥାବାର୍ତ୍ତା କରୁଛନ୍ତି । ମୁସଲମାନ ବେଶଧାରୀ ରାଜକିଶୋର ଅଲଙ୍କାର କିଣିବା ବାହାନାରେ ସେଠାରେ ପହଞ୍ଚିଗଲେ । ପୂର୍ବର ଅଭ୍ୟାସାନୁଯାୟୀ ପୁରନଲାଲ ତାହାର କର୍ମଚାରୀଙ୍କୁ ଲକ୍ଷ୍ୟ କରି କହିଲା, "ବାବୁ କ୍ୟା ମାଙ୍ଗତେହେଁ ଦେ ଦୋ ।" ସଙ୍ଗେ ସଙ୍ଗେ ଜଣେ କର୍ମଚାରୀ ରାଜକିଶୋରଙ୍କର ନିକଟବର୍ତ୍ତୀ ହୋଇ ପଚାରିଲା, "ଆପ୍ କ୍ୟା ମାଙ୍ଗତେହେଁ ?" ତାପରେ ରାଜକିଶୋର ଗୋଟିଏ ଭଲ ହାର ନେବାର ଇଚ୍ଛା ପ୍ରକାଶ କରିବାରୁ ସେ କର୍ମଚାରୀ କେତେଗୁଡ଼ିଏ ହାର ଆଣି ତାଙ୍କ ନିକଟରେ ଥୋଇ-

ଦେଲା । ବ୍ରଜକିଶୋର ହାର ଦେଖିବାକୁ ଲାଗିଲେ । ଇତମଧ୍ୟରେ ସିରସ୍ତାଦାର ମୁରଳୀଲାଲ୍ ସହିତ କଥୋପକଥନ ଶେଷ କରି ଉଠି ପଡ଼ିଲେ । ଦୋକାନରୁ ଓହ୍ଲାଉଛନ୍ତି, ମୁରଳୀଲାଲ୍ କହିଲା, "କାମ କେବେ ହେଉଛୁ ?" ସିରସ୍ତାଦାର ଟିକିଏ ଭାବି ନେଇ କହିଲେ "ଆଉ ଗୁରି ପାଞ୍ଚ ଦିନ ବିଳମ୍ବ ହେବ ।"

"କାହିଁକି ? ଆଉ ବିଳମ୍ବର କାରଣ କଣ ?"

"ବର ହାତରେ ତ କଥା । କାଲି ସନ୍ଧ୍ୟାକୁ ସଠିକ୍ ଖବର ମିଳିବ ।"

ଛଦ୍ମବେଶୀ ମୁସଲମାନଙ୍କର କୌଣସି ହାର ପସନ୍ଦ ହେଲା ନାହିଁ । ସିରସ୍ତାଦାର ଯିବା ପରେ ସେ ଉଠିଗଲେ । କିନ୍ତୁ ସିରସ୍ତାଦାରଙ୍କର ସେହି କଥାଟି "ବର ହାତରେ ତ କଥା" ତାଙ୍କ କାନରେ ବାରମ୍ବାର ଧ୍ୱନିତ ହେବାକୁ ଲାଗିଲା । ସେ ଭାବିଲେ—"ବର କିଏ ? କାହାର ବାହାଘର ? ସିରସ୍ତାଦାରଙ୍କର ତ କନ୍ୟା ନାହିଁ । କିଏ ବାନ୍ଧା ହେବ ତା ହେଲେ ? ପାଗଳୀଟା ବନ୍ଧୀ ହେବ ନାହିଁ ତ ?"

ସେ ଦିନ ରାତିରେ ବ୍ରଜକିଶୋରଙ୍କର ସୁଖ ନିଦ୍ରା ହେଲା ନାହିଁ । ରାତି ଦଶଟା ହେବ । ସେ ତାଙ୍କର କୋଠରୀ ବାରଣ୍ଡାରେ ପଦଚାରଣା କରୁ କରୁ ସିରସ୍ତାଦାରଙ୍କ ବିଷୟରେ ନାନା କଥା ଭାବୁଛନ୍ତି, ସହସା ଗୋଟାଏ ଶବ୍ଦ ଶୁଣିବାକୁ ପାଇଲେ । ସେ ଉତ୍କର୍ଣ୍ଣ ହୋଇ ଠିଆ ହେଲେ । ସିରସ୍ତାଦାରଙ୍କର କୋଠାଉପରୁ ଶବ୍ଦ ଆସୁଥିବାର ବୁଝି ପାରିଲେ । ସେ ବାରଣ୍ଡାର ଶେଷଭାଗକୁ ଯାଇ କାନ ପାତିଲେ । କ୍ଷୀଣ କ୍ରନ୍ଦନସ୍ୱର ପରି ଜଣାଗଲା । ପ୍ରାୟ ଅଧଘଣ୍ଟା ଧରି ଠିଆହୋଇ ରହିଲେ । ସେ ଶବ୍ଦ କ୍ରମେ ଅସ୍ପଷ୍ଟରୁ ଅସ୍ପଷ୍ଟତର ହୋଇ ଆସିଲା । ଏତେ ରାତିରେ ସିରସ୍ତାଦାରଙ୍କର ଘରେ କାନ୍ଦୁଛି କିଏ ? ପାଣୁଆର ଶୋଇବା ସ୍ଥାନ ତଳ ମହଲା । ଉପର ମହଲାରେ ସିରସ୍ତାଦାର,

ତାଙ୍କର ପତ୍ନୀ ଓ ସ୍ତ୍ରୀରବର୍ଷର ଶିଶୁପୁତ୍ର ଏ ତିନି ଜଣ ଶୁଅନ୍ତି । ପିଲ୍ଲୀ-ସ୍ତ୍ରୀର ପରି ତ ଜଣା ଯାଉ ନାହିଁ । ପାଗଳନୀ ସର୍ବଦା ଉପରେ ଥାଏ ପରି—ସେହି ପାଗଳନୀ କାନ୍ଦୁଥିବ । ପାଗଳନୀ ଅନେକ ସମୟରେ କାନ୍ଦେ ବୋଲି ରାଜକିଶୋର ପୂର୍ବରୁ ଅବଗତ ଅଛନ୍ତି । ତାଙ୍କର ଦୃଢ଼ ଧାରଣା ହେଲା ପାଗଳନୀ କାନ୍ଦୁଛି । କିନ୍ତୁ କାହିଁକି କାନ୍ଦୁଛି ସେ ? ସେ କିଏ, ଏପର୍ଯ୍ୟନ୍ତ ତାର ପରିଚୟ ତ ମିଳାଲା ନାହିଁ ।

ରାଜକିଶୋରଙ୍କର ଭାବନାର ଗତି ପରିବର୍ତ୍ତିତ ହୋଇଗଲା । କି ଉପାୟରେ ସେ ପାଗଳନୀର ପରିଚୟ ପାଇବେ, ସେଥିପାଇଁ ଉଦ୍‌ବିଗ୍ନ ହୋଇ ଉଠିଲେ ।



## —ଚତୁର୍ଦ୍ଦଶ ପରିଚ୍ଛେଦ—

ପ୍ରଭାତ ହେଲାକ୍ଷଣି ରାଜକିଶୋର ତାଙ୍କର ବନ୍ଧୁଙ୍କୁ ଏକାନ୍ତ ଭିତରୁ ଡ଼ାକିନେଲେ । ସିରସ୍ତାଦାରଙ୍କୁ ସେ ଯେଉଁ କାରଣରୁ ସନ୍ଦେହ କରୁଅଛନ୍ତି, ସେ ସମସ୍ତ ବିଷୟ ଗୋଟି ଗୋଟି କରି କହିଲେ— "କୌଣସି ଉପାୟରେ ପାଗଳନୀ ସହିତ ଦେଖା ହୋଇପାରିଲେ ଅନେକ କଥା ଜଣାଯାନ୍ତା ।" ଦୀନବନ୍ଧୁ କହିଲେ, "ତମ କଥା ଶୁଣି ମୁଁ ମଧ୍ୟ ସେଇଆ ଭାବୁଛି । କିନ୍ତୁ ସେ ଯେ ଅସୂର୍ଯ୍ୟଂପଶ୍ୟା । ତା ସଙ୍ଗରେ ଦେଖା କରି କଥାବାର୍ତ୍ତା କରିବା ତ ସହଜ କଥା ନୁହେଁ ।" ରାଜ-କିଶୋର କେତେକ ସମୟ ଚିନ୍ତା କଲାପରେ କହିଲେ, "ମୁଁ ଗୋଟିଏ ଉପାୟ ସ୍ଥିର କରିଛି ।"

ଦୀନବନ୍ଧୁ—କଣ ?

ରାଜ—ତମ ସ୍ତ୍ରୀ ତାଙ୍କ ଘରକୁ ଯାନ୍ତୁ ତ ?

ଦୀନ—ହଁ, ଯାନ୍ତୁ ; କିନ୍ତୁ ପାଗଳାଣୀକୁ ସେ ଏପର୍ଯ୍ୟନ୍ତ ଦେଖି ନାହାନ୍ତି ।

ରାଜ—ଆଜି ସନ୍ଧ୍ୟାରେ ସେ ତାଙ୍କ ଘରକୁ ବୁଲିଯାନ୍ତୁ । କଥା-ପ୍ରସଙ୍ଗରେ ଏହିପରି କହିବେ—ଗୋଟିଏ ସ୍ତ୍ରୀ ବଜାରରେ ବୁଲୁଥିଲା ; ବାବୁ ତାକୁ ନେଇ ଆସିଛନ୍ତି ।

ଦୀନ—ବାବୁ ? କେଉଁ ବାବୁ ନେଇ ଆସିଛନ୍ତି ବୋଲି କହିବେ ?

ରାଜ—ବାବୁ ତ ତମେ । ତମକୁ ଲକ୍ଷ୍ୟ କରି କହିବେ ।

ଦୀନ—ଓଃ, ବୁଝିଲି । ଆଚ୍ଛା, ତାହାପରେ ?

ରାଜ—ତାର ଘର ରଣପୁର ଗଡ଼ଜାତରେ । ଜାତିରେ ଭଣ୍ଡାରୁଣୀ । ତାର ଆଉ କେହି ନାହାନ୍ତି । ତା ଘର ପାଖରେ ଜଣେ ବାବାଜି ମଠ କରି ରହିଥିଲେ । ସେ ତାଙ୍କର ବାସନ ଧୂଆ ଧୋଇ କରି ମୁଠାଏ ଖାଉଥିଲା । ଅଜକ ମାସେ ହେବ ବାବାଜି ମରିଯିବାରୁ ସେଠାରୁ ପଳେଇ ଆସିଛି । ବାବାଜିଙ୍କ ଠାରୁ ସେ ଗୋଟେ କଣ ମନ୍ତ୍ର ଶିଖିଛି ଯେ, ସେଥିରେ କେତେଟା ପାଗଳା ଭଲ କଲଣି । କହୁଛି, "ଏକୁଟିଆ ମାଇପି ଲୋକ, ବାରଆଡେ ବୁଲିବୁଲି ପାରିବି ନାହିଁ ବୋଲି ତମ ଘରକୁ ଆସିଲି. ନଇଲେ ମୋର ପେଟ କଣ ଅପୋଷା ରହନ୍ତା ?" ତମର ସେ ବାୟାଣୀଟି ଝିଅଟିକୁ ଦେଖାଅ । ଯଦି ଭଲ ହୋଇଯାଏ ।

ଏ ଉପାୟରେ ସିରସ୍ତାଦାରଙ୍କ ସ୍ତ୍ରୀ ପାଗଳାଣୀକୁ ଦେଖାଇବାକୁ ରାଜି ହେବେ ତ ?

ଦୀନ—ରାଜି ହୋଇପାରନ୍ତି; କିନ୍ତୁ ସେପରି ସ୍ତ୍ରୀଲୋକଟିଏ ତ ପୁଣି ଖୋଜିବାକୁ ହବ । ତାଙ୍କ··· ···

ରାଜ—ତୁମର ତ ଆଜିଯାଏ ନାବାଳକ ଦୋଷ ଯାଇ ନାହିଁ । ଜାଉଘରେ ଗୁହରି ପାଇଲ କେମେଡ ମ ?

ଧୀନ—ତାହାଙ୍କ ?

ରାଜ—ସେହିପରି କଥା କହୁଛ ଯେ ! ସ୍ତ୍ରୀଲୋକଟିଏ ଖୋଜିବ ତାହାଙ୍କ , ଆମ୍ଭଙ୍କୁ କଣ ସ୍ତ୍ରୀବେଶଟାଏ ପିନ୍ଧି ଆସିବ ନାହିଁ ?

ଧୀନ—ତମେ ଏମିତ ପୋଲଣ ବୁଦ୍ଧି ଖର୍ଚ୍ଚ କରୁଛ, ମୁଁ କପର ଜାଣିଲି ? କନ୍ତୁ ଆଜ ଗୋଟିଏ କଥା । ପାଗଳିନୀ ତାଙ୍କ ଘରେ ରହିବାର ବର୍ଷଟାଏ ହେଲାଣି । ପାଣୁଆ ଘରର ଗୁଳର, ତବଣ ଘଣ୍ଟା ଘର ଭିତରେ ରହୁଛି । ସେ ଯେଉଁଠି ଥରେ ମାତ୍ର ଦେଖିବାକୁ ସୁଯୋଗ ପାଇଛି ·········

ରାଜ—ସେ ବାହାର ଲୋକଙ୍କୁ ଦେଖାଇବେ ନାହିଁ, ଏହି କଥା କହୁଛ ତ ? ଅଚ୍ଛା, ବାହାର ଲୋକଙ୍କୁ ନ ଦେଖାଇବାର କାରଣ କିଛି ଅନୁମାନ କରି ପାରୁଛ ? କନ୍ତୁ ମନେ ରଖ, ପାଗଳିନୀ ପ୍ରକୃତରେ ପାଗଳିନୀ ନୁହେ । ତା ହୋଇଥିଲେ ସେ ନିଶ୍ଚୟ ଡ଼ାକ୍ତର, କବିରାଜଙ୍କୁ ଦେଖାଇଥାନ୍ତେ । ପାଗଳିନୀର ଇତହାସ ରହସ୍ୟମୟ, ସନ୍ଦେହ ନାହିଁ ।

ଧୀନ—ତା ନିଶ୍ଚୟ । ତାକୁ ବାହାର ଲୋକଙ୍କ ସହିତ ଦେଖା କରିବାକୁ କ ମିଳାମିଶା କରିବାକୁ ଦେଉ ନ ଥିବାର କାରଣ ମୁଁ ଅନୁମାନ କରେ—ପାଗଳିନୀ ଦ୍ୱାରା ତାଙ୍କର କିଛି ଦୁରଭିସନ୍ଧି ପ୍ରକାଶିତ ହୋଇଯିବା ଭୟରେ ସେ ଏପରି କୌଶଳ ରଚନା କରିଛନ୍ତି ।

ରାଜ—ଠିକ୍ ଅନୁମାନ କରିଛ । ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ପାଗଳିନୀ କପରି ଅପର ଲୋକ ସହିତ କଥାବାର୍ତ୍ତା କରିବାର ସୁଯୋଗ ନ ପାଉ ।

ଧୀନ—ବେଶ୍, ଏ ଅନୁମାନ ଯଦି ସତ୍ୟ ହୁଏ, ତେବେ ଆମର ଏତେ କୌଶଳ ବୃଥା ହେବ ପିନା ! ସେ ହୁଏତ କୌଶଳ ମିଥ୍ୟା

କାରଣ ଦେଖାଇ ପାଗଳଙ୍କୀ ସହିତ ଦେଖା କରିବାକୁ ସୁଯୋଗ ନ ଦେଇପାରନ୍ତି ।

ରାଜ—ଆଉ ଗୋଟିଏ କଥା ଭାବିବାକୁ ହେବ । ସେ ପାଗଳଙ୍କର ପାଗଳାମି ଛଡ଼ାଇବା ପାଇଁ କୌଣସି ପ୍ରକାର ଚେଷ୍ଟା କରୁ ନାହାନ୍ତି—କରିବେ ନାହିଁ ମଧ୍ୟ; କିନ୍ତୁ ଅପର ଲୋକ ଜଣେ ଯେତେବେଳେ ସ୍ୱଇଚ୍ଛାରେ ଯାଇ କହିବ, ପୁଣି 'ଗୁଣୀ' ଏତେ ନିକଟରେ, ସେ ନ ଦେଖାଇବେ ତା କପରି ? ନିତାନ୍ତ ଗଜମୂର୍ଖ ନୁହନ୍ତି ତ ସେ ! ସେ କଣ ବୁଝିପାରିବେ ନାହିଁ, ପାଗଳଙ୍କୁ ଭଣ୍ଡାରୁଣୀକୁ ଦେଖାଇ-ବାକୁ ଆପତ୍ତି କଲେ ନିଶ୍ଚୟ ଅନ୍ୟ ଲୋକ ମନରେ ସନ୍ଦେହ ହେବ ? ବିଶେଷତଃ ତମର ସ୍ତ୍ରୀ ଯେତେବେଳେ ଏ ପ୍ରସ୍ତାବ ଉତ୍ଥାପନ କରିବେ, ମୋର ବିଶ୍ୱାସ ସେ ନିଶ୍ଚୟ ସ୍ୱୀକୃତ ହେବେ । ତା ପରେ ଯଦି ସେ ଦେଖାଇବା ପୂର୍ବରୁ ଏପରି ପ୍ରଚାର କରାଯାଏ—ଭଣ୍ଡାରୁଣୀ କହୁଛି, ସେ ପାଗଳଙ୍କ ପାଖରେ ବସି ମନ୍ତ୍ରପାଠ କରିବା ସମୟରେ ପାଗଳଙ୍କ ଯେପରି କଥା ନ କହେ, ସେ ବିଷୟରେ ସାବଧାନ ହେବାକୁ ହେବ ; ଯଦି ସେ ସର୍ବଦା ଏଣୁ ତେଣୁ ବକୁଥାଏ, ତା ହେଲେ ତା ପାଟି ବାନ୍ଧି ଦେବାକୁ ହେବ ; ମନ୍ତ୍ର ପାଠ କରିବା ସମୟରେ ସେ କୌଣସି ପ୍ରକାର ଶବ୍ଦ କଲେ ମନ୍ତ୍ର କାର୍ଯ୍ୟକାରୀ ହେବ ନାହିଁ—ତାହେଲେ ସେ.........

ଦୀନ—ଲାଭ ?

ରାଜ—ଲାଭ ଏହି ହେବ ଯେ ପାଗଳଙ୍କ ଦ୍ୱାରା କୌଣସି କଥା ପ୍ରକାଶିତ ହୋଇଯିବାର ସନ୍ଦେହ ସେ କରିପାରିବେ ନାହିଁ । ଫଳରେ ପାଗଳଙ୍କୁ ଦେଖିବାର ସୁଯୋଗ ମିଳିବ ।

ଦୀନ—କେବଳ ଦେଖିବା ଦ୍ୱାରା ଲାଭ କଣ ? ତା ସହିତ କଥୋପକଥନ ନ କଲେ ଗୁପ୍ତ କଥା ତ କିଛି ପ୍ରକାଶ ପାଇବ ନାହିଁ ।

ରାଜ—ଆଗ ଦେଖାଅ ହେଉନା, ପରେ ସେ କଥା—ଅଙ୍ଗୁଳି ପ୍ରବେଶ ପରେ ବାହୁ ପ୍ରବେଶ କରିବା ପାଇଁ ବିଶେଷ ପରିଶ୍ରମ ପଡ଼ିବ ନାହିଁ । ଲୋକଟାକୁ ଦେଖିଲେ ତାର ଚେହେରାରୁ ଅବଶ୍ୟ ଅନେକ କଥା ବୁଝାଯାଇପାରେ ।

ଦୀନ—କେଜାଣି ଭାଇ, ତମେ ପୋଲିଶ ଲୋକ—ସେ କ୍ଷମତା ତମର ଥାଇପାରେ; କିନ୍ତୁ ସାବଧାନ ! ଧରି ପଡ଼ି ଶେଷରେ ଅପ-ମାନିତ ଯେପରି ନ ହୁଅ ।

ରାଜ—ସେଥିପାଇଁ ଭାବନା କରନା, ଯାଅ—ଆଗ ଅନୁମତି ମଗାଅ, ତାପରେ ଯାହା କହିବାର ମୁଁ କହୁଛି ।

ସେ ଦିନ ଦିନ ଗୁଡ଼ିଏ ବେଳେ ଦୀନବନ୍ଧୁଙ୍କର ସ୍ତ୍ରୀ ସିରସ୍ତା-ଦାରଙ୍କ ଘରକୁ ବୁଲି ଗଲେ । ପ୍ରସଙ୍ଗକ୍ରମେ ପ୍ରକୃତ କଥାଟି ପକାଇଲେ । ସିରସ୍ତାଦାରଙ୍କର ପତ୍ନୀ ଟିକିଏ ଇତସ୍ତତଃ କରି କହିଲେ, "ହଉ ସେ ଅସନ୍ତୁ, ପଗ୍ଭରିବି ।" ଦୀନବନ୍ଧୁଙ୍କର ସ୍ତ୍ରୀ କହିଲେ "ଏଥିରେ ପଗ୍ଭରିବାର କଣ ଅଛି ? ସେ ତ ତମ ଘର ଗ୍ଭଳି ଆଉ କୁଆଡେ ଯାଉ ନାହିଁ । ମରଦ ନୁହେଁ, ପୁଣି ମାଇପି ଲୋକ ଚିକିତ୍ସା କରିବ । ଏଥିରେ ହାନି କଣ ଅଛି ଯେ ? ହଁ, ଅଉ ଗୋଟିଏ କଥା । ଯେତେ-ହେଲେ ସେ ଘରର ମୂରବି । ତାଙ୍କୁ ନ ପଗ୍ଭରିବ କେମିତି ? ମୁଁ ଯାହା କହୁଛି, ଦେଖିବ ସେ କେବେ ନାହିଁ କରିବେ ନାହିଁ । ବାବୁ ଆମର କହୁଥିଲେ, ଅବିକା ମୋ ସଙ୍ଗରେ ସେ ଡାକ୍ତରାଣୀକି ପଠେଇ ଦେବାକୁ । ମୁଁ ନାହିଁ କରି ଆଗ ତମକୁ କହିବାକୁ ଆସିଲି । ସେ ପୁଣି ପ୍ରଥମ ଦିନ ଔଷଧ ଦିଏ ନାହିଁ । ଖାଲି ଅସି ଦେଖି-ଯାଏ । ଅସି ଦେଖିଲେ କୋଉଠି ଜାଣିପାରେ ରୋଗୀ ଭଲ ହେବ କି ନାହିଁ । ଭଲ ହେବାର ଜାଣିଲେ କାଲି ଯାଇ କଣ ମନ୍ଦ କରିବ ।",

ସିରସ୍ତାଦାର ଯଥାସମୟରେ କଚେରୀରୁ ଫେରିଲେ, ସ୍ୱାମୀ ସ୍ତ୍ରୀ ଦୁଇଜଣ ଢେର ପରାମର୍ଶ କଲେ । ତା ପରେ ସିରସ୍ତାଦାରଙ୍କ ପତ୍ନୀ ଦୀନବନ୍ଧୁଙ୍କ ସ୍ତ୍ରୀଙ୍କୁ ଅସି କହିଲେ—"ବାବୁ କହିଲେ ତମେ ଯା ଭଣ୍ଡାରୁଣୀକୁ ପଠେଇ ଦେବ । ଦେଖି ସେ, ଯଦି କପାଳରେ ଥାଏ ଭଲ ହେବ ।" ରାଜକିଶୋର ସେ ଶୁଭ ସମ୍ବାଦ ଶୁଣି ଆନନ୍ଦିତ ହୋଇ ଉଠିଲେ ଏବଂ ସଙ୍ଗେ ସଙ୍ଗେ ପୋଷାକ ପରିବର୍ତ୍ତନ କରି ସ୍ତ୍ରୀ-ବେଶରେ ସଜ୍ଜିତ ହେବାକୁ ଲାଗିଲେ ।

ସନ୍ଧ୍ୟା ସାତଟା । ରାଜକିଶୋର ଗୋଟିଏ ଗଢ଼ଜାତିଆ ଭଣ୍ଡାରୁଣୀ ବେଶରେ ସଜ୍ଜିତ ହୋଇ ଦୀନବନ୍ଧୁଙ୍କ ନିକଟରେ ଉପସ୍ଥିତ ହେଲେ । ଦୀନବନ୍ଧୁ ପରିହାସ କରି କହିଲେ, "ବାଃ, ବେଶଟି ବେଶ୍ ମାନୁଛି । ନଟବରଙ୍କର ଏ ବେଶ ଦେଖି ଶ୍ରୀମତୀ କିଏ ଅଜି ମୋହିତ ହୋଇ ରହିପାରିବେ ? ବନ୍ଧୁ, ତମର ରାଜକିଶୋର ନାମ ରଖି ବଡ ଭୁଲ୍ କରିଛନ୍ତି । ବ୍ରଜକିଶୋର ନାମ ଦେବା ଉଚିତ ଥିଲା ।" ରାଜକିଶୋର ସେଥିପରି ହସି ହସି କହିଲେ—"ଠିକ୍ କଥା ! ତମେ କିନ୍ତୁ ଏଣିକି ସଙ୍ଗାତୁଣୀଙ୍କୁ ଚଞ୍ଚଳା ବୋଲି ଡାକିବ ନାହିଁ । ଅଜିଠାରୁ ତାଙ୍କର ନାମ ଦୂତିକା ହେଲା ।" ଦୁଇ ବନ୍ଧୁଙ୍କ ମଧ୍ୟରେ ଗୋଟିଏ ଉଚ୍ଚହାସ୍ୟର ତରଙ୍ଗ ଖେଳିଗଲା । ତାପରେ ଦୀନବନ୍ଧୁ ଦ୍ରୁତ ପଦକ୍ଷେପରେ ଚଞ୍ଚଳାଙ୍କ ନିକଟକୁ ଦୌଡିଗଲେ । ଚଞ୍ଚଳା ସେତେବେଳେ ଅଗଣା ମଝିରେ ଠିଆ ହୋଇ ଦୁଇ ବନ୍ଧୁଙ୍କର କଥୋପକଥନ ଶୁଣୁଥିଲେ । ଦୀନବନ୍ଧୁ କହିଲେ—"ଦୂତିକେ, ଆଜି ବିଳମ୍ବ କାହିଁକି ? ନଟରାଜ ଯେ ବଡ ବିଚଳିତ ହୋଇ ପଡିଲେଣି । ଶୀଘ୍ର ଶ୍ରୀମତୀଙ୍କ ସଙ୍ଗରେ ତାଙ୍କର ଏକାନ୍ତ ମିଳନ ଘଟାଅ ।"

ରାଜକିଶୋର ଭଣ୍ଡାରୁଣୀ ବେଶ ଧରି ସିରସ୍ତାଦାରଙ୍କ ଅନ୍ତଃ-ପୁରକୁ ଯିବେ, ଚଞ୍ଚଳା ସେ କଥା ପୂର୍ବରୁ ଜାଣନ୍ତି; କିନ୍ତୁ ସ୍ୱୟଂ ଦୂତୀ-

କାର୍ଯ୍ୟ କରିବେ ଏ କଥାଟା ଭାବି ନ ଥିଲେ । ବର୍ତ୍ତମାନ ବଡ଼ ମୁସ୍କିଲରେ ପଡ଼ିଲେ । ଯାହାଙ୍କ ସମ୍ପର୍କରେ ମୁହୂର୍ତ୍ତକପାଇଁ ଧୁଡ଼ା ଠିଆ ହୋଇ ନାହାନ୍ତି, ଅଜି ତାଙ୍କର ପଥ-ପ୍ରଦର୍ଶକ ହେବେ ?

ତାଙ୍କର ଲାବଣ୍ୟ-ମଣ୍ଡିତ ମୁଖମଣ୍ଡଳ ଲଜ୍ଜାରେ ଆରକ୍ତିମ ହୋଇ ଉଠିଲା । ଦୀନବନ୍ଧୁ କହିଲେ "କାହିଁ ଏମିତି ଠେଙ୍ଗା ଠିଆ ହୋଇ ରହିଲେ । ଚଞ୍ଚଳ ବାହାରି ପଡ଼ ।" ଚଞ୍ଚଳା କୃତ୍ରିମ କୋପ ପ୍ରକାଶ କରି କହିଲେ "ତମ ବନ୍ଧୁ ତମକୁ ବଡ଼ । ଯାଅ, ମୋତେ ଆଜି କିଛି ଲୋଡ଼ ନାହିଁ ।" ଦୀନବନ୍ଧୁ ରହସ୍ୟବ୍ୟଞ୍ଜକ ସ୍ୱରରେ ଅନୁନୟ କରି କହିଲେ "ପ୍ରିୟେ ! ଶୃଣୁ ଶୀଳେ ! ମୁଞ୍ଚ ମୟି ମାନ ମନିଦାନଂ ।" ଚଞ୍ଚଳାଙ୍କର ବନ୍ଧୁଲି ଅଧର ପ୍ରଫୁଲ୍ଲିତ ହୋଇ ଉଠିଲା । ସେ ହସି ହସି କରି ହସି ପକାଇ କହିଲେ "ତମେ ବୈଷ୍ଣବପାଣି ଯାହାଦଳରେ ଦୂଆରି ହୋଇ ବାହାରିଲେ ବେଶ୍ ସାଜିବ ଏକା ।" "କିନ୍ତୁ ଏ କଥା ଜାଣିଥା, ତା ପୂର୍ବରୁ ତମକୁ ଦୂତୀ ବେଶରେ ନ ସଜାଇ ଛାଡ଼ୁଚି ନାହିଁ ।" "ସଜାଇବା ପାଇଁ ତମକୁ ଶ୍ରମ ସ୍ୱୀକାର କରିବାକୁ ହେବ ନାହିଁ । ମୁଁ ନିଜେ ସାଜି ଆସୁଛି ।" କହି ଚଞ୍ଚଳା ଦ୍ରୁତ ପଦରେ ଗୃହ ମଧ୍ୟକୁ ଗୁଲି ଯାଇ ଭିତରୁ କବାଟ ବନ୍ଦ କରିଦେଲେ ।

ଦୀନବନ୍ଧୁ ନାନା ପ୍ରକାର ବୁଝା ଶୁଝା କରି କଷ୍ଟକଷ୍ଟରେ ତାଙ୍କୁ ରାଜି କରାଇଲେ । ରାତି ଅଠଟା ହେବ । ଚଞ୍ଚଳା ଭଣ୍ଡାରୁଣୀ ବେଶ-ଧାରୀ ରାଜକିଶୋରଙ୍କୁ ଘେନି ସିରସ୍ତାଦାରଙ୍କ ଘରେ ପହଞ୍ଚିଲେ । ସିରସ୍ତାଦାରଙ୍କ ପତ୍ନୀ କ୍ଷେତ୍ରମଣି ବୋଧହୁଏ ତାଙ୍କର ଅପେକ୍ଷା କରୁ-ଥିଲେ । ସେ ଦେଖିବାମାତ୍ରେ କହିଲେ "ଆସ ମୋ ସାଙ୍ଗରେ ।" ତା ପରେ ଦ୍ୱିତଳକୁ ଉଠିଲେ । ତାଙ୍କ ପଛରେ ଭଣ୍ଡାରୁଣୀ ଓ ଚଞ୍ଚଳା ମଧ୍ୟ ଦ୍ୱିତଳକୁ ଗଲେ । ରାଜକିଶୋର କିନ୍ତୁ ଉଚିତ ମନେ କଲେ ନାହିଁ ଚଞ୍ଚଳାଙ୍କୁ ସଙ୍ଗରେ ନେବା । ଚଞ୍ଚଳାଙ୍କୁ ଲକ୍ଷ୍ୟ କରି

କହିଲେ, "ତୁମେ ଏହିଠାରେ ଥାଅ। ବେଶୀ ଲୋକ ଯିବା ଉଚିତ ନୁହେଁ।" ପାଗଳିନୀକୁ ଦେଖିବାର ଇଚ୍ଛା ଥିଲେହେଁ ଚଞ୍ଚଳା ଅଗତ୍ୟା ସେହିଠାରେ ଅପେକ୍ଷା କରିବାକୁ ବାଧ୍ୟ ହେଲେ। କ୍ଷେତ୍ରମଣି ମଧ୍ୟ ମନେ ମନେ ଖୁସି ହେଲେ। ପାଗଳିନୀ ପାଖକୁ ଯିବାଲାଗି ଚଞ୍ଚଳାଙ୍କୁ ଯଦିଚ ସେ ମୁହଁ ଉପରେ କହିପାରୁ ନ ଥିଲେ, ତଥାପି ମନ ଭିତରେ ତାଙ୍କର ହେଉଥିଲା 'ଭଣ୍ଡାରୁଣୀ ସଙ୍ଗରେ ଏ ପୁଣି କାହିଁକି ଆସିଲେ? ଧାଉଁ ଗଛୁ ଗଛୁ ଶେଷକୁ ବାନର ନ ହେଉ'।"

ଦ୍ୱିତଳର ପଶ୍ଚିମ ପାଖକୁ ଗୋଟିଏ ନାତିକ୍ଷୁଦ୍ର ପ୍ରକୋଷ୍ଠ। ପ୍ରକୋଷ୍ଠର ଦ୍ୱାର ବାହାର ପାଖରୁ ବନ୍ଦ। କ୍ଷେତ୍ରମଣି ଦ୍ୱାର ଫିଟାଇ-ଦେଲେ। ଭଣ୍ଡାରୁଣୀ-ବେଶଧାରୀ ରାଜକିଶୋର ଦେଖିଲେ, କୋଠରୀର ମଧ୍ୟ ଭାଗରେ ଗୋଟିଏ ଖଟିଆ ଉପରେ ପାଗଳିନୀ ଶୋଇଛି। ନିକଟରେ ଲଣ୍ଠନଟିଏ ଜଳୁଛି। ସେ ଭିତରକୁ ଯାଇ ପାଗଳିନୀର ଖଟିଆ ପାଖରେ ଠିଆ ହେଲେ। ପାଗଳିନୀ ଉଠି ବସିଲା। ରାଜକିଶୋର ତାର ମୁହଁକୁ ଗୁହିଁ ଦେଇ ଚମକି ଉଠିଲେ—ଏ ମୁହଁ ଯେ ତାଙ୍କର ପରିଚିତ! ତିନି ବର୍ଷ ତଳେ ସେ ଏହି ମୁହଁ ତ ଦେଖିଥିଲେ! ତିନି ବର୍ଷ ମଧ୍ୟରେ ଅବଶ୍ୟ ଅନେକ ପରିବର୍ତ୍ତନ ଘଟିଛି; ତଥାପି ପରିଷ୍କାର ଚିହ୍ନି ହେଉଛି ତ!

ରାଜକିଶୋରଙ୍କର ହୃତ୍‌ପିଣ୍ଡ ଘନ ଘନ ସ୍ପନ୍ଦିତ ହେବାକୁ ଲାଗିଲା। ତାଙ୍କର ସମସ୍ତ ଶରୀର ଅବଶ ହୋଇ ଆସିଲା। ସ୍ଖଳିତ ପଦଦ୍ୱୟ ଅବଶ ଶରୀରର ଭାର ବହନ କରିପାରିଲା ନାହିଁ। ରାଜକିଶୋର ପଡି ଯାଉ ମାଉ ଖଟିଅକୁ ଧରି ସମ୍ଭାଳି ହୋଇଗଲେ। ପର ମୁହୂର୍ତ୍ତରେ ତାଙ୍କର ନିଜର ଅବସ୍ଥା ମନେ ପଡିଗଲା। କାଳେ ତାଙ୍କର ଛଦ୍ମବେଶ ଧରା ପଡ଼ିଯିବ, ସେଥିପାଇଁ ସେ ଯଥାସମ୍ଭବ ଚେଷ୍ଟାରେ ସହଜ ଭାବରେ ଠିଆ ହୋଇ ରହିଲେ। କିନ୍ତୁ ତାଙ୍କର

ହୃଦୟ ବଡ଼ ଅସ୍ଥିର, ବଡ଼ ବଚଳିତ ହୋଇ ଉଠିଲା । ପୂର୍ବ ମୁହୂର୍ତ୍ତର ଘଟନା ସମସ୍ତ ତାଙ୍କୁ ସ୍ୱପ୍ନପର ବୋଧ ହେଲା । ସେ ଭାବିଲେ—ବୋଧହୁଏ ଦେଖିବାରେ ଭ୍ରମ ହୋଇଅଛି । ଆଉ ଥରେ ଭଲ କରି ପାଗଳିନୀକୁ ଚାହିଁଲେ । ଅଣୁମାତ୍ର ଭ୍ରମ ନାହିଁ—ଠିକ୍ ସେହି ପରିଚିତ ମୂର୍ତ୍ତି । ଯେଉଁ ମୂର୍ତ୍ତିକୁ ସେ କେତେ ମାସ ଲାଗି ଅହୋରାତ୍ର ଦେଖିବାର ସୁଯୋଗ ପାଇ ପାରିଥିଲେ—ସେ କଣ କେବେ ଭୁଲିହୁଏ ?

ପାଗଳିନୀ ନିକଟରେ ଅଧିକ କ୍ଷଣ ରହିବା ନିରାପଦ ନୁହେ ଭାବି ରାଜକିଶୋର ଯଥାଶୀଘ୍ର କମ୍ପିତ କରରେ ପାଗଳିନୀର ଆଖିପତା ଟିକିଏ ଟେକିଦେଇ ଦେଖିଲେ । ସିଦ୍ଧସ୍ୱାଦୀରଙ୍କ ପତ୍ନୀ ବୁଝିଲେ, ଭଣ୍ଡାରୁଣୀ ଲକ୍ଷଣ ଦେଖୁଛି । କିନ୍ତୁ ପ୍ରକୃତରେ ଭଣ୍ଡାରୁଣୀର ସେତେବେଳେ ଦେଖିବା ଭଳି ଶକ୍ତି ଆଦୌ ନ ଥିଲା । ପର ମୁହୂର୍ତ୍ତରେ ଭଣ୍ଡାରୁଣୀ କହିଲା, "ହଉ, ଆସ, ମୁଁ ଦେଖି ସାରିଲିଣି ।" ଉଭୟେ ନିଷ୍କ୍ରାନ୍ତ ହୋଇଗଲେ । ପାଗଳିନୀ ପୂର୍ବବତ୍ ବିଜନ କାରାରେ ପଡ଼ି ରହିଲା ।



## —ପଞ୍ଚଦଶ ପରିଚ୍ଛେଦ—

କିଶୋରୀ—ଯେଉଁ କିଶୋରୀ ଲାଗି ରାଜକିଶୋରଙ୍କର ପ୍ରାଣ ହାହାକାର କରି ଉଠୁଛି, ଯାହାକୁ ଅନ୍ୱେଷଣ କରିବା ଲାଗି ସେ ତାଲଚେର ପର୍ଯ୍ୟନ୍ତ ବୁଲି ଆସିଲେଣି, ସେହି କିଶୋରୀକୁ ଏତେ ସହଜରେ ଏପରି ଅନାୟାସରେ ସିଦ୍ଧସ୍ୱାଦୀରଙ୍କ ଘରେ ଦେଖିପାରିବେ, ସେ କଥା କିଏ ସ୍ୱପ୍ନରେ ସୁଦ୍ଧା ଭାବିଥିଲା କି ? ରାଜକିଶୋର ଆନନ୍ଦରେ ଅସ୍ଥିର ହୋଇ ପଡ଼ିଲେ । କିନ୍ତୁ କିଶୋରୀ ଯେ

ବନ୍ଦୀ, ବର୍ଷେ କାଳ ଶଙ୍କର କାଗ୍ରରେ ପଡ଼ି ପଡ଼ି ସଢ଼ି ଗଲଣି । କେହି ଜଣେ ତାର ଅନୁସନ୍ଧାନ କରୁଛି, ଧନେ ତାକୁ କାଗ୍ରରୁ ଉଦ୍ଧାର କରିବ—ଏ କଥା ଯଦି ସେ ଜାଣିପାରନ୍ତା ନିଶ୍ଚୟ ତାର ସନ୍ତପ୍ତ ପ୍ରାଣ ଅନେକ ପରିମାଣରେ ଶୀତଳ ହୁଅନ୍ତା । ଏ ଖବର କା ସେ ପାଇବ କପରି ? ସିରସ୍ତାଦାର ଯେପରି ଭାବରେ ରଖିଛନ୍ତି, ମୁହୂର୍ତ୍ତକ ପାଇଁ ସୁଦ୍ଧା ତାକୁ ଏକୁଟିଆରେ ପାଇବା ଅସମ୍ଭବ । କଣ କରିବେ ? କି ଉପାୟରେ ତାକୁ ଅଶ୍ୱାସନା ଦେବେ ?

ରାଜକିଶୋର ସେ ବିଷୟରେ ବହୁତ ଭାବିଲେ ମନେ ମନେ ଏକ ଉପାୟ ସ୍ଥିର କଲେ । ରାତ୍ରି ପ୍ରଭାତ ହେଲା । ସେ ପ୍ରାତଃକୃତ୍ୟ ସମାପନ କରି ତାଙ୍କର ନିଭୃତ କକ୍ଷରେ ବସି ଲେଖିଲେ—

ସ୍ନେହର କିଶୋର !

ତମେ ବୋଧହୁଏ ମୋତେ ଚିହ୍ନିପାରିବ ନାହିଁ—ଚିହ୍ନିବାର ଅବଶ୍ୟକତା ମଧ୍ୟ ନାହିଁ । ମୋତେ ବର୍ତ୍ତମାନ ଚିହ୍ନିପାରୁ ନାହିଁ ବୋଲି ଯେ ମୁଁ ତମର ଅପରିଚିତ, ସେପରି ଭାବିବ ନାହିଁ । ତମ ସହିତ ମୋର ପରିଚୟ ବହୁତ ଦିନର—ଅଳ୍ପ ନୁହେଁ, ପ୍ରାୟ ତିନି ବର୍ଷ ପୂର୍ବର କଥା । ରାଜକିଶୋର ଯେତେବେଳେ ତମ ଘରେ ରହି ତମକୁ ପଢ଼ାଉଥିଲେ, ମନେ ଥିବ । ସେହି ସମୟରେ ତମ ସହିତ ପରିଚିତ ହେବାର ସୁଯୋଗ ପାଇଥିଲି । ଥାଉ, ସେ ସବୁ ବିଷୟ ଉଲ୍ଲେଖ କରି ଲାଭ କିଛି ନାହିଁ । ଏତକ ଯେ ଲେଖିଲି, କେବଳ ତମର ସନ୍ଦେହମୋଚନ ପାଇଁ । ଏବେ ମୋତେ ସିରସ୍ତାଦାରଙ୍କ ଗୁପ୍ତଚର ବୋଲି ସନ୍ଦେହ କରିବ ନାହିଁ ତ ? ବିଶ୍ୱାସ କର, ମୁଁ ତମର ଅପଣାର—ତମର ମଙ୍ଗଳ କରିବା ମୋର ଉଦ୍ଦେଶ୍ୟ ।

ତମେ ବର୍ତ୍ତମାନ ପିରସ୍ତାଦାରଙ୍କ ଗୃହରେ ବନ୍ଦିନୀ । ତମର ଦୁର୍ଦ୍ଦଶା ମୁଁ ଉତ୍ତମରୂପେ ବୁଝିପାରୁଛୁ । ତେବେ 'ଈଶ୍ୱର ଯାହା କରନ୍ତି ମଙ୍ଗଳ ନିମିତ୍ତ' । ସେଥିପାଇଁ ଦୁଃଖିତ ହେବା ନିଷ୍ପ୍ରୟୋଜନ । ଏଥିରେ ନିଶ୍ଚୟ ଈଶ୍ୱରଙ୍କର ସଦିଚ୍ଛା କିଛି ନିହିତ ଅଛି । ବର୍ଷେ କାଳ ସ୍ୱଜନ ହାତରେ ପଡି ପଡି ବହୁତ କଷ୍ଟ ସହିଲଣି ; କିନ୍ତୁ ପରମ ପିତାଙ୍କ କରୁଣାରେ ତମର ସେ କଷ୍ଟ ଅଚିରେ ଦୂରୀଭୂତ ହେବ, ସନ୍ଦେହ ନାହିଁ । ଜଗନ୍ନାଥ ବାବୁଙ୍କର ତମେ ଏକମାତ୍ର କନ୍ୟା, ପୁଣି ବଡ ଆଦରରେ ଲାଳିତା । ତାଙ୍କର ଚିନ୍ତାରେ ବିଶେଷ କଷ୍ଟ ପାଉ-ଥିବ; କିନ୍ତୁ ସେ ଭାବନା ହୃଦୟରୁ ଦୂର କର—ସେ ଖୁବ୍ ଭଲ ଅଛନ୍ତି ।

ବର୍ତ୍ତମାନ ତମର ଭାବିବାର ବିଷୟ ହେଉଛି, କିପରି ଏ ବନ୍ଦି-ଶାଳାରୁ ମୁକ୍ତ ହେବ । ସେଥିପାଇଁ ମୋର ଉପଦେଶ ମାନି କାର୍ଯ୍ୟ କଲେ ତମର ମୁକ୍ତିପଥ ନିଶ୍ଚୟ ସୁଗମ ହେବ । ତମେ ଅନ୍ୟାନ୍ୟ ପଲ୍ଲୀ-ମହିଳାଙ୍କଠାରୁ ଯଥେଷ୍ଟ ଶିକ୍ଷିତା । ବୁଝିବାର କ୍ଷମତା ତମର ଅଛି । ଆଶା କରେ ମୋ ମତର ଅବାଧ୍ୟ ହେବ ନାହିଁ । ମୁକ୍ତି ଲାଭ କରିବାକୁ ହେଲେ ଯେଉଁମାନେ ତମକୁ ବନ୍ଦୀ କରି ରଖିଛନ୍ତି, ପ୍ରଥମେ ସେମାନଙ୍କ ମନରେ ବିଶ୍ୱାସ ଜନ୍ମାଇବା ଦରକାର—ଯେପରି ସେମାନେ ତମକୁ ସ୍ୱାଧୀନତା ଦିଅନ୍ତି । ସେଥିପାଇଁ କାରାଗୃହରେ ପଡ଼ି ଅରଣ୍ୟ-ରୋଦନ କଲେ କିଛି ଲାଭ ନାହିଁ । ଚିରଦିନ ସେହିପରି କାନ୍ଦୁଥିଲେ ସୁଦ୍ଧା କେହି ଶୁଣିବେ ନାହିଁ । ଅଭି ଆମ ଦେଶର ଏ ଦୁର୍ଦ୍ଦଶା କାହିଁକି ? ଅରଣ୍ୟରୋଦନକୁଶଳା ନାରୀମାନଙ୍କ ଯୋଗୁ ପିନା ! ନାରୀ ସମାଜର ପ୍ରାଣ—ଜାତୀୟ ଜୀବନର ମୂଳ ପିଣ୍ଡ । ଯେଉଁ ଦେଶର ନାରୀ ଯେତେ ଶିକ୍ଷିତା ଓ ସାହସିନୀ, ସେ ଦେଶ ସେହି ପରିମାଣରେ ଉନ୍ନତ ଓ

ସୁସଭ୍ୟ । ରାଣୀ ଦୁର୍ଗାବତୀ, ଅହଲ୍ୟା ବାଈ ପ୍ରଭୃତିଙ୍କ ଜୀବନଇତିହାସ ଜାଣିଛ । ସେମାନେ ଏହି ଦେଶର ନାରୀ ତ ? ସେତେବେଳେ ଦେଶର ଅବସ୍ଥା ଆଉ ବର୍ତ୍ତମାନ ଅବସ୍ଥା ତୁଳନା କରି ଦେଖିଲେ ଆକାଶ ପାତାଳର ପ୍ରଭେଦ ଦେଖାଯାଏ । ତାହାଙ୍କ ? ସେହି ବୀରାଙ୍ଗନାମାନଙ୍କ ବଂଶରେ ଜନ୍ମ ହୋଇ ତମେ ଆଜି ଅନ୍ତଃପୁରରେ ବସି କାନ୍ଦୁଛ—ଲଜ୍ଜା ବୋଧ କରୁ ନାହିଁ ? ନାରୀର ପ୍ରାଣ କୋମଳତାରେ ଗଢ଼ା ସତ; ବର୍ତ୍ତମାନ କ୍ଷେତ୍ରରେ ପ୍ରାଣକୁ ପଥରରୁ ବଳି କଠିଣ ନ କଲେ ଉଦ୍ଧାରର ଅନ୍ୟ ଉପାୟ ନାହିଁ । ହୃଦୟରେ ସାହସ ବାନ୍ଧ, ପ୍ରାଣକୁ କଠିନ କର । ଦେଖିବ ତମର ଭାଗ୍ୟ ନିଶ୍ଚୟ ପରିବର୍ତ୍ତିତ ହୋଇଯିବ । ଯଦି ତମେ ମୁକ୍ତି ଲାଭ କରିବାକୁ ଇଚ୍ଛା କର, ବର୍ତ୍ତମାନ ମୋର ଉପଦେଶ—ଶଠ ପାଖରେ ଶଠମାତି ଆଚରଣ କର । ଅନ୍ତରରୁ ସମସ୍ତ ଦୁଃଖ ଯନ୍ତ୍ରଣା ପୋଛି ପକାଇ ମନକୁ ପ୍ରଫୁଲ୍ଲିତ କର । ସେମାନଙ୍କ କୌଣସି କଥାର ପ୍ରତିବାଦ ବା ଅମତ କର ନାହିଁ । ତା ହେଲେ ତମେ ତାଙ୍କର ବଶରେ ଆସିଛ ବୋଲି ସେମାନେ ଦୃଢ଼ ବିଶ୍ୱାସ କରିବେ । ମୁକ୍ତିପଥ ଅନାୟାସରେ ସୁଗମ ହୋଇ ଉଠିବ । ମୋର କଥାସବୁ ଆଜି ରାତିମଧ୍ୟରେ ମନେ ମନେ ଭଲରୂପେ ଚିନ୍ତା କରି କାଲିଠାରୁ ଛଦ୍ମବେଶ ଧାରଣ କର । ଏହାଦ୍ୱାରା ଆଉ ଏକ ସୁବିଧା ହେବ, ତମେ ସେମାନଙ୍କର ଷଡ଼ଯନ୍ତ୍ରର ଅନେକ ବିଷୟ ଜାଣିପାରିବ । ଯାହା କିଛି ଜାଣିପାରିବ, ମୋତେ ଯେପରି ଜାଣିବାକୁ ଦେବାପାଇଁ ଭୁଲି ନ ଯାଅ । ସମସ୍ତ ବିଷୟ ଖଣ୍ଡେ କାଗଜରେ ଲେଖି ଏହି ଦୋତାଲାକୁ ଲାଗିଥିବା ଗୁଳ ଘରର ବିବଣ୍ଡାକୁ ସେ କାଗଜ ଖଣ୍ଡ ପକାଇଦେଲେ ମୁଁ ପାଇପାରିବି । ତମେ ବୁଦ୍ଧିମତୀ, ଭବ ଚିନ୍ତା କାର୍ଯ୍ୟ କରିବ । ବେଶୀ କିଛି କହିବାର ମୋର ଅବସର ନାହିଁ । ମୁଁ ଛଦ୍ମବେଶରେ ଆସିଛି କେବଳ ତମକୁ ଏହି ସମ୍ବାଦ ଦେବାପାଇଁ । ସେମାନେ ମତେ ପାଗଳୀ ଭଡ଼ା

ସ୍ବଣୀ ବୋଲି ଜାଣନ୍ତୁ । ଏହି ମନ୍ତ୍ରରେ ତୁମର ପାଗଳାମୀ ଛାଡ଼ିଯିବ ବୋଲି ମୁଁ ଧ୍ରୁବ ବିଶ୍ୱାସ କରୁଛି । କାଲିଠାରୁ ସୁନା ଝିଅ ପରି ସେମାନଙ୍କର ବାଧ୍ୟ ହୋଇ ମୁକ୍ତିଲାଭ କରିବାର ଚେଷ୍ଟା କର । ଇତି ।

ପ୍ରତୀଚୀ ଦିଗ୍‌ବଧୂଙ୍କୁ ସୂର୍ଯ୍ୟଙ୍କର ଶେଷ ଲୋହିତ ରଶ୍ମି ଟିକ ଯେତେବେଳେ ଲିଭିଗଲା, ବିହଙ୍ଗମକୁଳ ସନ୍ଧ୍ୟା ବନ୍ଦନା ପାଠ କରି କରି ସ୍ୱ ସ୍ୱ ନୀଡ଼ ଅଭିମୁଖରେ ଧାବିତ ହେଲେ—ସ୍ଫୁଟନୋନ୍ମୁଖ କୋରକରାଜିର ମୃଦୁ ହାସ୍ୟଚ୍ଛଟାରେ ବନ ଉପବନ ଶୋଭାମୟ ହୋଇ ଉଠିଲା । ନାନା ପ୍ରକାର ଅଲୋକମାଳାରେ ବିଭୂଷିତ ହୋଇ ଶୁଭ୍ର ସୌଧ-କିରୀଟିନୀ କଟକ ନଗରୀ ହସି ଉଠିଲା । ରାଜକିଶୋର ସେହି ଶୁଭ ମୁହୂର୍ତ୍ତରେ ଭଣ୍ଡାଚୁଣୀ ବେଶ ଧରି ବନ୍ଧୁପତ୍ନୀଙ୍କ ସହିତ ସିରସ୍ତାଦାରଙ୍କ ଗୃହକୁ ଯାତ୍ରା କଲେ ।

ଛଦ୍ମବେଶଧାରୀ ରାଜକିଶୋର ସିରସ୍ତାଦାରଙ୍କ ପତ୍ନୀଙ୍କୁ କହିଲେ, "ବାୟାଣୀକୁ କିଛି ଔଷଧ ଦେବି ନାହିଁ—ମନ୍ତ୍ର ପଢ଼ି ଫୁଙ୍କିଦେବି । ସେଥିପାଇଁ ଟିକିଏ ଏକୁଟିଆ ଘର ଦରକାର । ସେ ଘରେ ଯେପରି ବାୟାଣୀ ଛଡ଼ା ଆଉ କେହି ନ ରହନ୍ତି । ଆଉ ଗୋଟିଏ କଥା, ମନ୍ତ୍ର ପଢ଼ିବା ବେଳେ ସେ ଯେପରି ପାଟି ନ କରେ । ପାଟି କଲେ ମନ୍ତ୍ର କାଟିବ ନାହିଁ । ଆଗରୁ ଲୁଗାରେ ତାର ପାଟି ବାନ୍ଧିଦେବାକୁ ହେବ ।" ସେ କଥା ସିରସ୍ତାଦାରଙ୍କ କର୍ଣ୍ଣଗୋଚର ହେଲା । ପାଗଳୀର ପାଟି ଯଦି ବନ୍ଧାଯିବ, ଭଣ୍ଡାଚୁଣୀ ସହିତ ନିର୍ଜନରେ ରହିଲେ କୌଣସି ପ୍ରକାର ସନ୍ଦେହର କାରଣ ନାହିଁ । ସେ ବିନା ଆପତ୍ତିରେ ଅନୁମତି ଦେଲେ ।

ଭଣ୍ଡାଚୁଣୀର ପ୍ରସ୍ତାବମତେ ପାଗଳୀର ପାଟି ବନ୍ଧା ଗଲା । ସେ ଘରେ ମଧ୍ୟ ଅପର ଲୋକେ କେହି ରହିଲେ ନାହିଁ । ଭଣ୍ଡାଚୁଣୀ

ଉତ୍ତରୁ କବାଟଟି ବନ୍ଦ କରିଦେଇ ପୂର୍ବ ପ୍ରକାଶିତ ଲେଖା ଖଣ୍ଡି ପାଗଳାଣୀର ସମ୍ମୁଖରେ ଧରିଲା । ପାଗଳାଣୀ ସମସ୍ତ ପାଠ କଲା । ସେତେବେଳେ ତାର ହୃଦୟ ଉପରେ ହର୍ଷ ବିଷାଦରେ ଆନ୍ଦୋଳିତ ହେବାକୁ ଲାଗିଲା, ତାହା ସେହି ଜାଣେ । ମୁହଁ ବନ୍ଦ ହେବାରୁ କିଛି ପ୍ରକାଶ କରିପାରିଲା ନାହିଁ । ଭଣ୍ଡାରୁଣୀକୁ କୃତଜ୍ଞତାପୂର୍ଣ୍ଣ ନୟନରେ ବାରମ୍ବାର ନିରୀକ୍ଷଣ କରିବାକୁ ଲାଗିଲା କେବଳ ।

ଭଣ୍ଡାରୁଣୀ ସେ ଲେଖାଖଣ୍ଡ ପୂର୍ବବତ୍ ଭାଙ୍ଗ କରି ଅଣ୍ଟାରେ ଖୋସି ବାହାରି ଆସିଲା । ଆସିଲାବେଳେ ସିରସ୍ତାଦାରଙ୍କ ପତ୍ନୀଙ୍କୁ କହିଲା, "ମା, ମୁଁ ଯାଉଛି । ଯାଜପୁରରେ ଗୋଟାଏ ଝିଅ ପାଗଳ ହୋଇଛି, ମୋତେ କହୁଥିଲେ ଜଣେ ସେଠାକୁ ଯିବାକୁ । ବାଟଖର୍ଚ୍ଚ ବି ଦଶଟଙ୍କା ଦେଇଛି, ମୁଁ ଆଜି ରାତିରେ ଯିବି । ଫେରୁ ଫେରୁ ଆଉ ମାସେ ଖଣ୍ଡେ ଚାଲିଯିବ, କଣ କରିବ । କାଲି ସକାଳକୁ ବାପୁଣୀ ଭଲ ହୋଇ ଯାଇଥିବ । ଯାହା କହିବ, ସେ ତାହା କରିବ । ନିଅଁକୁ ଡେଇଁବାକୁ କହିଲେ ମଧ୍ୟ ସେ ନାହିଁ କରିବ ନାହିଁ । କାଲିକି ଜାଣିପାରିବ ଯେ ମୋ କଥା ସତ କି ମିଛ । ମୁଁ ଅବିକା କିଛି କହୁ ନାହିଁ । ସେ ଆଗ ଭଲ ହୋଇଯାଉ । ଫେରିଲେ ମନ ଖୁସି କରି ନେବି ଯେ । ତମେ କଣ ନ ଦେବା ଲୋକ ?" ଯୋଗମଣିଙ୍କର ଉତ୍ତରକୁ ଅପେକ୍ଷା ନ କରି ସେ ସଙ୍ଗେ ସଙ୍ଗେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା ।

ଭଣ୍ଡାରୁଣୀ ଚାଲିଗଲା; କିନ୍ତୁ ସେ ବାପୁଣୀ କାନରେ କେଉଁ ମନ୍ତ୍ର ଶୁଣାଇ ଦେଇଗଲା, ବାପୁଣୀ ରାତି ସାରା ସେ ମନ୍ତ୍ର ଜପ କରିବାକୁ ଲାଗିଲା । ରାଜକିଶୋରଙ୍କର ସେହି ଲେଖା ବିଷୟରେ କିଶୋରୀ ଭାବିଲା—ବହୁତ ଭାବିଲା । ବାସା ତାର ଭଲ ଅଛନ୍ତି—

ଘରପୋଡ଼ କଥା ତା ହେଲେ ମିଛ ? ସେ ବି ତ ସେହି ଅନୁମାନ କରିଥିଲା । ଏପରି ମିଥ୍ୟା କହି ତାକୁ ବର୍ଷେ କାଳ ବନ୍ଦୀ କରି ରଖିବାର ଉଦ୍ଦେଶ୍ୟ କଣ ? ନିଶ୍ଚୟ ଏଥିରେ ତାଙ୍କର କିଛି ଦୁରଭିସନ୍ଧି ଅଛି । ତେବେ ଉପାୟ କଣ ?

"ଉପାୟ କଣ ?" ଏହି ପ୍ରଶ୍ନଟିର ଉତ୍ତର ସେ ବହୁତ ଖୋଜିଲା କିନ୍ତୁ ତାର ସମସ୍ତ ବିଦ୍ୟା ବୁଦ୍ଧି ଖର୍ଚ୍ଚ କରି ସୁଦ୍ଧା ପାଇଲା ନାହିଁ । ଶେଷରେ ସେହି ଛଦ୍ମବେଶୀଙ୍କର ପ୍ରସ୍ତାବ ଅନୁଯାୟୀ କାର୍ଯ୍ୟ କରିବାକୁ ସ୍ଥିର କରି ପ୍ରତିଜ୍ଞା କଲା, କାଲିଠାରୁ ନିଶ୍ଚୟ ସେ କପଟ ବେଶ ଧାରଣ କରିବ । "ଶଠେ ଶାଠ୍ୟଂ ସମାଚରେତ୍" ମହାବାକ୍ୟ ଶିରୋଧାର୍ଯ୍ୟ ।



## —ଷୋଡ଼ଶ ପରିଚ୍ଛେଦ—

ପରଦିନ ସକାଳ ସାତଟା ବେଳେ କ୍ଷେତ୍ରମଣି ଯେତେବେଳେ ପାଗଳୀଙ୍କ ଗୃହର ଦ୍ୱାର ଖୋଲିଲେ, ସେହି ଶବ୍ଦରେ ତାର ନିଦ୍ରା ଭଗ୍ନ ହେଲା । କ୍ଷେତ୍ରମଣି ଗୃହରେ ପ୍ରବେଶ କଲାମାତ୍ରେ ପାଗଳୀ ଉଠି ବସିଲା । କହିଲା, "ବୋଉ, ମୁଁ ଏତେବେଳଯାଏ ଶୋଇ ପଡ଼ିଲି, ଅଗରୁ ଉଠାଇ ଦେଲୁ ନାହିଁ ? କେତେଟା ସମୟ ହେବ ? ବାପା କଚେରୀକୁ ଗଲେଣି ?" କ୍ଷେତ୍ରମଣି ଅଶ୍ରୁତପୂର୍ବ ଭାବରେ ତାର ମୁହଁକୁ ଗୁହିଁ ରହିଲେ । ପାଗଳୀ କହିଲା "ଏ କଣ ?" ଏମିତ ଚୂପଟି ହୋଇ ଠିଆ ହୋଇ ରହିଲୁ ଯେ !" ସହସା କ୍ଷେତ୍ରମଣିଙ୍କ ତୁଣ୍ଡରେ କଥା ଯୋଗାଇଲା ନାହିଁ । ଭଣ୍ଡାରୁଣୀ ମନ୍ତ୍ରର କି ଅଦ୍ଭୁତ ଶକ୍ତି ! ସେ ଯାହା କହି ଯାଇଥିଲା, ସବୁ ଅକ୍ଷରେ ଅକ୍ଷରେ ସତ । ଗୋଟାଏ ରାତ୍ର-ଭିତରେ ଆଶ୍ଚର୍ଯ୍ୟ ପରିବର୍ତ୍ତନ । ଶହ ଚେଷ୍ଟା କରି ସୁଦ୍ଧା ଯାହାଠାରୁ

ପଦେ କଥା ଆଦାୟ କରିବା କଷ୍ଟକର ହେଉଥିଲା, ସେ ବଳେ ବଳେ ଏତେ କଥା କହି ଯାଉଛି ! ଭଣ୍ଡାରୁଣୀ କି କୁହୁକ କରି ନ ଦେଲା ? "ବାପା, ବୋଉ" ସମ୍ବୋଧନ—ସତେ ଯେମିତ ନିଜର ଝିଅ ।

କ୍ଷେତ୍ରମଣି ପାଗଳୀଙ୍କୁ ସେହିପରି ଉତ୍କଣ୍ଠିତ ଗୃହାଣୀରେ ଗୃହି କହିଲେ "ନା, ବେଳ ବେଶୀ ହୋଇ ନାହିଁ । ବାପା କଚେରୀକୁ ଯାଇ ନାହାନ୍ତି । ତୁ ଆ, ଦାନ୍ତପନ୍ତ ଘଷି ଗାଧୋଇ ପଡ଼ । କାଲିଠାରୁ କିଛି ଖାଇ ନାହୁଁ—ଭୋକ ହେଉଥିବ ।" ପାଗଳୀ ସୁନା ଝିଅଟି ପରି ଧୀରେ ଧୀରେ ବାହାରକୁ ଆସିଲା ।

ସିରସ୍ତାଦାର ବୈଠକଖାନାରେ ବସି ଗୃ ପିଆଲାରେ ମୃଦୁ ଚୁମ୍ବନଟାଏ ଦେଇ ବେଳକୁ ଉପରୁ ପାଗଳୀର କଣ୍ଠସ୍ୱର ଶୁଣିବାକୁ ପାଇଲେ । ଆଶ୍ଚର୍ଯ୍ୟ ଏବଂ କୌତୂହଳ ଯୁଗପତ୍ ତାଙ୍କୁ ଚଞ୍ଚଳ କରି ପକାଇଲା । ସେ ଆରାମ ଚୌକିର ହାତ ଉପରେ ଗୃ ପିଆଲା ଥୋଇ-ଦେଇ ଉପରକୁ ଉଠିଗଲେ । ପାଗଳୀ ଘରୁ ବାହାରି ଆସିଲା କ୍ଷଣି ଦେଖିଲା, ବୃଦ୍ଧ ସିରସ୍ତାଦାର ତାରି ଆଡକୁ ଅଗ୍ରସର ହେଉଛନ୍ତି । ସେ ଶିଶୁଟି ପରି ନିଃସଙ୍କୋଚ ଭାବରେ କହିଲା, "ବାପା, ବୋଉ ମୋତେ ଉଠାଇଦେଲେ ନାହିଁ, ବହୁତ ବେଳଯାଏ ଶୋଇ ପଡିଲି ଅଜି ।" ମୂକ ପାଗଳୀର ସହସା ଏପରି ପ୍ରଗଲ୍‌ଭତା ଦେଖି ସିରସ୍ତାଦାର ବଡ଼ ଆଶ୍ଚର୍ଯ୍ୟ ବୋଧକଲେ । ତାର ମୁହଁକୁ ଥରେ ଭଲଭାବରେ ଗୃହିଁଲେ । ଦେଖିଲେ, ଗୋଲାପ ଫୁଲଟି ପରି କମନୀୟ ମୁଖମଣ୍ଡଳରେ କଳା ଭ୍ରମରନିନ୍ଦୀ ବିଶାଳ ଆଖି ଦୁଇଟି, ଜବାଧର-ପୃଷ୍ଠରେ ଚନ୍ଦ୍ରକାଶୁଭ୍ର ହସ ଯେପରି ଲାଗି ରହିଛି । କି ସୁନ୍ଦର ଛବି ! ସତେ ଯେପରି କେଉଁ ପ୍ରତିମାଟିଏ । ବୃଦ୍ଧଙ୍କର ହୃଦୟ ବାତ୍ସଲ୍ୟ-ରସରେ ପୂରି ଉଠିଲା । ସେ ସ୍ନେହସିକ୍ତ କଣ୍ଠରେ କହିଲେ "ହଇ ମା,

ବହୁତ ବେଳ ଯାଏ ଶୋଇ ପଡ଼ିଲି ତ ପଡ଼ିଲି, ଷଡ କଣ ?" ବୃଦ୍ଧ ଆଜ କଣ କହିବାକୁ ହେଉଥିଲେ; କିନ୍ତୁ ପତ୍ନୀ ତାଙ୍କର ବାଧା ଦେଇ କହିଲେ "ତମେ ଯାଅ. ସେ ଦାନ୍ତ ଘଷି ଆଗ ଗାଧୋଇ ପଡ଼ୁ, କାଲି ରାତରେ କିଛି ଖାଇ ନାହିଁ ।" ସିରସ୍ତାଦାର ତଳ ମହଲାକୁ ଗ୍ଲିଗଲେ ।

ପାଗଳୀନୀ ଆଜ ପୂର୍ବର ପାଗଳୀନୀ ହୋଇ ନାହିଁ । ପୂର୍ବପରି ଏକୁଟିଆ ବସି କାନ୍ଦନ କରୁ ନାହିଁ । ତାର ଯଥେଷ୍ଟ ପରିବର୍ତ୍ତନ ଘଟିଛି । ବିଶେଷକ ଆଦ ଗୃହର ଯାବତୀୟ କାର୍ଯ୍ୟରେ ସେ କ୍ଷେତ୍ରମଣିଙ୍କୁ ସାହାଯ୍ୟ କରୁଛି । ସିରସ୍ତାଦାରଙ୍କର ଏକମାତ୍ର ପୁତ୍ର ଶଶୁ ତାର ଅତି ଆଦରର ଧନ । ତାକୁ ସେ ଆଦୌ କୋଳଛଡ଼ା କରୁ ନାହିଁ ।

ସିରସ୍ତାଦାର ଓ ତାଙ୍କର ପତ୍ନୀ ଉଭୟେ ପାଗଳୀନୀର ସହସା ପରିବର୍ତ୍ତନ ଦେଖି ବଡ଼ ଆନନ୍ଦିତ । ଉଭୟେ ତାକୁ ନିଜର କନ୍ୟା-ପରି ସ୍ନେହ, ଶ୍ରଦ୍ଧା କରିବାକୁ କୁଣ୍ଠିତ ନୁହନ୍ତି । ହେଲେ ସେ ପୂର୍ଣ୍ଣ ସ୍ୱାଧୀନତା ପାଇପାରେ ନାହିଁ । ଗୋଟିଏ ଘରେ ବନ୍ଦିନୀ ନ ଥିଲେହେଁ ମୁକ୍ତ ନୁହେଁ — ମନ ଖୋଲି କାହା ସହିତ ଦୁଇପଦ ସୁଖ ଦୁଃଖ ହୋଇପାରିବ । ତା ଉପରେ କ୍ଷେତ୍ରମଣିଙ୍କର ସର୍ବଦା ତୀକ୍ଷ୍ଣ ନଜର ।

ପାଗଳୀନୀ ଭଲ ହେବାର ଦୁଇ ଦିନ ହୋଇଗଲଣି । କିନ୍ତୁ ସିରସ୍ତାଦାର ଓ କ୍ଷେତ୍ରମଣି ତାକୁ 'ମା' ବୋଲି ଡ଼ାକୁଛନ୍ତି । ଆମେ ତାର ପ୍ରକୃତ ନାମରେ ଡାକିବା —କଣେଶ୍ୱ ।

ସେ ଦିନ ଦିନ ଦଶଟାବେଳେ କ୍ଷେତ୍ରମଣି "ଷ୍ଟୋଭ୍" ଲଗାଇ କଣପାଇଁ ଲୁଚି ଭାଜୁଛନ୍ତି । କଣେଶ୍ୱ ସେଠାରେ ବସି ଭଜା ଲାଗି ଆଳୁ କାଟୁଛି । କ୍ଷେତ୍ରମଣି ତାକୁ ଉଦ୍ଦେଶ୍ୟ କରି କହିଲେ "ମା, ତୋତେ ଗୋଟିଏ କଥା ପଚାରିବି ପଚାରିବି ବୋଲି ବହୁତ ଦିନ ହେଲା ହେଉଛି;

କିନ୍ତୁ କହିପାରୁ ନାହିଁ ।" ତାଙ୍କର ସେ ଅସମ୍ପୂର୍ଣ୍ଣ କଥା ଶୁଣି କିଶୋରୀ ଅଗ୍ରହାନ୍ୱିତ ହୋଇ କହିଲା, "ରହିଗଲ କାହିଁକି ବୋଉ ! କଣ କହୁନା ।" କ୍ଷେମମଣି କିଛି ନ କହି ଲାଜ ଲୁଚିବାରେ ଲାଗିଲେ । କିଶୋରୀ ତାଙ୍କ ପାଖକୁ ଘୁଞ୍ଚିଯାଇ ଅନୁଯୋଗ ସ୍ୱରରେ କହିଲା, "କଣ କହୁଥିଲ କହୁ ନାହଁ କାହିଁକି ?" କ୍ଷେମମଣି ଗୋଟାଏ ବେଦନାଭରା ନିଶ୍ୱାସ ତ୍ୟାଗ କରି କହିଲେ, "କଣ କହିବି ? ଝିଅ ଜନମ ତ ପର ଘରକୁ । ଯେତେ ଆପଣାର କଲେ ସୁଦ୍ଧା କିଏ ବାନ୍ଧି ରଖିପାରିବ ?" କିଶୋରୀ ସେ କଥାର ଉଦ୍ଦେଶ୍ୟ ବୁଝିଲା । ଚମକି ଉଠିଲା, ହଠାତ୍ ତାର ଗୁଡ଼ା ଦାଉଁ ଦାଉଁ ପଡ଼ିବାକୁ ଲାଗିଲା । ନ ଜାଣି ପୁଣି କି ବିପଦ ଉପସ୍ଥିତ ହୁଏ । କିନ୍ତୁ ପର ମୁହୂର୍ତ୍ତରେ ମନର ସେ ଭାବ ଗୋପନ ରଖି ନିତାନ୍ତ ସରଳ ଜିଜ୍ଞାସୁ ଗୃହାଣୀରେ କ୍ଷେମମଣିଙ୍କୁ ପୁଛି ରହିଲା । କ୍ଷେମମଣି ସେ ଗୃହାଣୀର ଅର୍ଥ ବୁଝିପାରିଲେ । କହିଲେ "ବାପା ତୋର ଗୋଟିଏ ବରପାତ୍ର ଠିକଣା କରିଛନ୍ତି । ବୟସ ପଚିଶ ଛବିଶ ହେବ । ବଡ଼ ରୂପବନ୍ତ । ଗୁଣ ବି ସେମିତି । ଏ ଓଡ଼ିଶା ମଧ୍ୟରେ ସେପରି ଜଣେ କେହି ନାହିଁ । ସମ୍ପତ୍ତି ବୋଲି କହିଲେ ନ ସରେ । ଭୁଣ୍ଡ ଫିଟାଇଲେ ପଚିଶ ଜଣ ହାଜର ହୋଇଯିବେ । ତାଙ୍କର ବୋଉଟି ଭାରି ପସନ୍ଦ ହୋଇଛନ୍ତି । କହୁଥିଲେ, ଝିଅ, ଜ୍ୱାଇଁ ..." କିଶୋରୀ ବାଧା ଦେଇ କହିଲା, "ବୋଉ, ତମେ ସେମିତି କହିଲେ ଲଗଫୁଟ ଫିଙ୍ଗିଦେବି ଜାଣିଥା ।" କ୍ଷେମମଣି ହସି ହସି ତାକୁ କୋଳକୁ ଅଉଜାଇ ପକାଇଲେ ।

ଅତି ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ କରିବା ରାଜକିଶୋରଙ୍କ ଅଭ୍ୟାସ । ରାତି ସାଢ଼େ ଚାରିଟା ହେବ । ରାଜକିଶୋର ଶଯ୍ୟା ତ୍ୟାଗ କରି ବାହାରକୁ ଆସିଲେ । ଜ୍ୟୋତିହୀନ ଚନ୍ଦ୍ର ସେତେବେଳକୁ ପଶ୍ଚିମ

ଆକାଶ କୋଣକୁ ଢଳି ପଡ଼ଲେଣି । ନିଷ୍ପ୍ରଭ ଜ୍ୟୋସ୍ନାଲୋକରେ କାଠଯୋଡ଼ିର ବାଲୁକାଶଯ୍ୟା କ୍ଷୀରସାଗରର ଅପୂର୍ବ ଶ୍ରୀ ଧାରଣ କରିଛି । ଶୀକରସିକ୍ତ ସମୀରଣ ଦୂର ବଟପି-ଶାଖାରୁ ବାମା-ବିରହ-ବିଧୁର ଚକ୍ରବାକର କରୁଣ ସଙ୍ଗୀତଲହରୀ ବହି କେଉଁ ଅଜଣା ଦେଶକୁ ଚାଲି ଯାଉଛି । ରାଜକିଶୋରଙ୍କ ହୃଦୟରେ ଗୋଟାଏ ଅବ୍ୟକ୍ତ ବ୍ୟଥାର ରାଗିଣୀ ବାଜି ଉଠିଲା । ସେ ମଧ୍ୟ ମୃଦୁ ପବନରେ ସେହିପରି କେଉଁ ଆଡ଼େ ଭାସିଗଲା । ସେ ବେଦନାଭରା ଗୋଟାଏ ଦୀର୍ଘ ଉଷ୍ଣ ନିଶ୍ୱାସ ତ୍ୟାଗକରି କାଠଯୋଡ଼ି ବନ୍ଧକୁ ଚାହିଁ ବାରଣ୍ଡାରେ ବସିଗଲେ । ଅର୍ଦ୍ଧଘଣ୍ଟା ପରେ ପଶ୍ଚାଦ୍‌ଦିଗରେ କଣ ଗୋଟାଏ ଶବ୍ଦ ଶୁଣି ଦୃଷ୍ଟି ଫେରାଇଲେ । ଦେଖିଲେ ଭାଙ୍ଗ ହୋଇ ଖଣ୍ଡେ କାଗଜ ପଡ଼ିଛି । ମନରେ ତାଙ୍କର ଆଶା ନୈରାଶ୍ୟର କେତେ ଛବି ନାଚିଗଲା । ସେ କ୍ଷିପ୍ରହସ୍ତରେ କାଗଜଖଣ୍ଡି ଉଠାଇ ନେଇ ଖୋଲିଲେ । କ୍ଷୀଣା-ଲୋକରେ ଅକ୍ଷରଗୁଡ଼ିକ ସ୍ପଷ୍ଟ ଦେଖାଗଲା ନାହିଁ । ଗୃହ ମଧ୍ୟକୁ ଯାଇ ଲଣ୍ଠନଟି ତେଜିଦେଲେ । କିଶୋରୀର ହସ୍ତାକ୍ଷର । ଆଗ୍ରହାନ୍ୱିତ ଭାବରେ ପଢ଼ି ବସିଲେ—

"ସେହି ଦିନଠାରୁ ମୁଁ ତାଙ୍କୁ 'ବାପା' 'ବୋଉ' ଡ଼ାକୁଛି । ସେମାନେ ହିଁ ଅପର ମୋତେ ମଧ୍ୟ ସ୍ନେହ ଆଦର କରୁଛନ୍ତି । ବୋଉ କାଲି ମୋତେ ମୋର ବିବାହ କଥା କହୁଥିଲେ । ବାପା କୋଉଟି ଭଲ ବରଟିଏ ଠିକଣା କରିଛନ୍ତି । ସେ ଭାରି ବଡ଼ଲୋକ, ତୁଣ୍ଡ ଖୋଲିଲେ ପଚାଶ ଜଣ ଆସି ଜମା ହୋଇପାରନ୍ତି । ତାଙ୍କ ଘର କେଉଁଠି ଜାଣି ନାହିଁ । ଦୋତାଲାରେ ଯେଉଁ ଘରେ ମୁଁ ଶୁଏ, ତା ପାଖ ଘରେ ସେମାନେ ଶୁଅନ୍ତି । ରାତିରେ ସେ ଦୁଇଜଣ କଥାବାର୍ତ୍ତା ହେଉଥିଲେ । ମୁଁ ଏତକି ଶୁଣିଛି, ବାପା କଣ ପଚାରିବାରୁ ବୋଉ କହିଲେ—ମୁଁ

କହିଥିଲି ସେ କଥା । ତାର ଡାକ୍ତରଖାନାରେ ଅମଳ ନାହିଁ । ବାପା କହିଲେ—ଆଜ କାଲି ଚିନ୍ତା ନାହିଁ । ଡାକ୍ତରଖାନା ଭଲରେ ଭଲରେ ହୋଇଯିବ । ପଅରଦିନ ଶ୍ରୀମତୀ ଆସି ପହଞ୍ଚିବ, ମୁଁ ଖବର ପାଇଛି । ସେ ଆସିଲା ସାଙ୍ଗେ ସାଙ୍ଗେ ହାତଗଣ୍ଠି ପକାଇଦେବା । ଆପଣଙ୍କ କଥା ମାନି ମୁଁ ଚୁପ୍ ଅଛି । କଣ କରିବି ବୁଦ୍ଧି କହିଦେବେ । ଇତି ।

—କିଶୋରୀ"

ରାଜକିଶୋର ପତ୍ରଖଣ୍ଡି ଅତି ଥରେ ପାଠକରି ଯତ୍ନର ସହିତ ନିଜର ଟ୍ରଙ୍କମଧ୍ୟରେ ରଖିଲେ । ତା ପରେ ବାରଣ୍ଡାରେ ବସି କଣ ଭାବିବାକୁ ଲାଗିଲେ ।

ହାଲ୍ଲ ଘସ୍ପୁ ଘସ୍ପୁ ଦୀନବନ୍ଧୁ ଆସି କହିଲେ "କିହେ, ଅଙ୍କ କାଟି ଲାଗି ହେବ ନାହିଁ କି ?" ରାଜକିଶୋର ଉଠିପଡ଼ି କହିଲେ, "ତମେ ଅଙ୍କ ଏତେ ଚଞ୍ଚଳ କପାଳ ଉଠିପଡ଼ିଲ ପ ?" ଦୀନବନ୍ଧୁ ଟିକି ହାସ୍ୟ କରି କହିଲେ, "ଚଞ୍ଚଳ କଣ ଉଠିଲି ? ସାତଟା ବାଜିଗଲାଣି ଯେ !" ରାଜକିଶୋର ଅପ୍ରସ୍ତୁତ ହୋଇ ଉଠିଲେ । କହିଲେ, "ସତେ ? ରାତିରେ ଭଲ ନିଦ ହେଲା ନାହିଁ । ଏଠାରେ ବସୁ ବସୁ ନିଦ ହୋଇଗଲା !"

ଦିନ ଦୁଇଟା ସମୟ ହେବ, ସିରସ୍ତାଦାରଙ୍କ ଗୁଡ଼ିକର ପାଣୁଆ ଆସି ରାଜକିଶୋରଙ୍କ ନିକଟରେ ଉପସ୍ଥିତ ହେଲା । ରାଜକିଶୋର ସେତେବେଳେ କଣ ଗୋଟାଏ ବହି ଦେଖୁଥିଲେ । ସେ ପାଣୁଆକୁ ନିକଟରେ ଦେଖି କହିଲେ, "ପାଣୁ, ଖବର କଣ ?"

"ନାଇଁ ବାବୁ, ଆଜ ଖବର କଣ !"

"ତମର ସେ ବାଯାଣୀ ଭଲ ହୋଇଗଲାଣି ଶୁଣୁଛି—ସତ ?"

"ହଁ, ଆଜ୍ଞା, ସତ । ସେ ଭଣ୍ଡାରୁଣୀ ଘରରେ କଣ ମନ୍ତ୍ର କରିଦେଲା ଯେ ସକାଳକୁ ତ ସୁନାଟିଏ ।"

"ଅବକା ସେ ଖୁବ୍ ଭଲ ଅଛି ?"

"ଆଜ୍ଞା, ସେ ଘର ଓଳବା କାଟିବାଠୁ ବଣ୍ଟୁକୁ ପାଠ ପଢ଼ାଇବା ପର୍ଯ୍ୟନ୍ତ ସବୁ କାମ କରୁଛି ଏବେ ।"

"ସେ ତ ଭଲ ହୋଇଗଲାଣି, ବାବୁ ତାକୁ ବାହା କରି-ଦଅନ୍ତୁ ଏବେ ଭଲ ବରଟି ଦେଖି ।"

"ହଁ, ଆମେ ତ ସେ କଥା ଖୋଜୁଛୁ .....ଷୀରଘିଠା ଖାଆନ୍ତୁ ।"

"ଖାଲି ଖୋଜିଲେ ହେବ ? ବାବୁ ବାବୁଆଣୀଙ୍କୁ କହିଲେ ହେବ କି ?"

"ଆମ କଥାରେ କଣ ସେ କରିବେ ? ତାଙ୍କ ଇଚ୍ଛା........"

"ଅଚ୍ଛା ପାଣ୍ଡେ, ତୁ ଗୋଟାଏ କାମ କରିପାରିବୁ ?"

"କଣ କହନ୍ତୁ ।"

"ବଡ଼ ଗୁପ୍ତ କାମ ଏକା । କେହି ଯେପରି ନ ଜାଣନ୍ତି । ତୋତେ ମୋର ବିଶ୍ୱାସ ହେଲା ବୋଲି —"

"କେହି ଜାଣିବେ ନାହିଁ ଆଜ୍ଞା ! ଆପଣ ଯେମିତି କହିବେ ସେମିତି ଗୁପ୍ତରେ କରି ଆସିବି । ମୁଁ ପିଲା ହୋଇଚି, ଗୁପ୍ତକଥା କାହା-ଆଗେ କହିଦେବି ? ସେମିତି ହେଲେ ଆପଣ ଦେଖୁ ନାହାନ୍ତି, ବାବା ଧବଳେଶ୍ୱର ଜାଣନ୍ତି—ମା କଟକ ଚଣ୍ଡୀ ଜାଣନ୍ତି ।"

ରାଜକିଶୋର ଟ୍ରଙ୍କରୁ ଦଶଟଙ୍କିଆ ନୋଟ ଖଣ୍ଡେ ବାହାର କରି ପାଣ୍ଡିଆ ହାତକୁ ବଢ଼ାଇ ଦେଇ କହିଲେ, "ନେ, କାମ କରି ଆସିଲେ ଆଉ ଦଶ ଟଙ୍କା ପାଇବୁ ।" ପାଣ୍ଡିଆ ବୁଝିପାରି କହିଲା,

"ନାହିଁ ଆଜ୍ଞା, ଆପଣ ରଖନ୍ତୁ । ମୁଁ କଣ ଟଙ୍କା ମାଗୁଛି ? ଆପଣଙ୍କର ଗୋଟାଏ ବୋଲ କରିବି, ସେଥିପାଇଁ······ଆମେ ତ ଗରିବ ଲୋକ, ବାବୁମାନଙ୍କର ବୋଲ ହାକ କରିବା··· ····· ।"

"ଅଚ୍ଛା ପାଣ୍ଡୁ, ତୁ ମୋ ପାଖରେ ରହିବୁ ?"

"ଆପଣ ଯଦି ରଖିବେ ମୁଁ କଣ ନାହିଁ କରୁଛି ?"

"ହଉ, ତୁ ଆଗ ଏ କାମଟି କରିଆ କି, ତା ପରେ ସେ କଥା ।"

ରାଜକିଶୋର ନୋଟ ଖଣ୍ଡି ପୁଣି ତା ହାତକୁ ବଢ଼ାଇଦେଲେ । ପାଣୁଅ କହିଲା, "ନାହିଁ ବାବୁ, ଟଙ୍କା ରଖନ୍ତୁ । କି କାମ କରିବି ଆଗେ କହନ୍ତୁ ।" ରାଜକିଶୋର ଜୋର୍ କରି ତା ହାତରେ ଗୁଞ୍ଜିଦେଇ କହିଲେ, "ବିଶେଷ କଷ୍ଟ କାର୍ଯ୍ୟ କିଛି ନୁହେ । ତୁ ଚିଠିଖଣ୍ଡେ ନେଇଯା, ସେ ବାମ୍ଭଣୀକୁ ଲୁଚାଇ ଦେଇ ଦେବୁ—ପାରିବୁ ତ ?" ପାଣୁଅ ଟିକିଏ ଚିନ୍ତା କରି ହସି ଉଠିଲା । କହିଲା—"ଏଇ ଗୋଟାଏ କଥା ପାରିବି ନାହିଁ ? ଆଜ୍ଞା, ସେ ଏକା ଆପଣଙ୍କ ଲାଗି—ପାଠ ପଢ଼ିଛି । ରୂପ ଯେମିତି ସରଗ ଅପସରୀ ।" ପାଣୁଅର ଭୂମିକାରୁ ରାଜକିଶୋର ତାର ମନୋଗତ ଭାବ ବୁଝିଗଲେ । ପୂର୍ବ ମୁହୂର୍ତ୍ତରେ ବାମ୍ଭଣୀର ବିବାହ ବିଷୟ ନେଇ କଥା ପଡ଼ିଥିଲା । ବର୍ତ୍ତମାନ ଗୁପ୍ତରେ ଚିଠି ଦେବା କଥା ଶୁଣି ପାଣୁଅ ଭାବିଲା—ରାଜକିଶୋର ତାକୁ ବିବାହ କରିବାକୁ ଇଚ୍ଛୁକ ବୋଧହୁଏ । ପାଣୁଅର ସେପରି ଭାବିବା ମଧ୍ୟ ସ୍ୱାଭାବିକ । ଯାହା ହେଉ ରାଜକିଶୋର ତାର ଦୃଢ଼ ବିଶ୍ୱାସ ଜନ୍ମାଇବା ପାଇଁ କହିଲେ, "ପାଣ୍ଡୁ, ମୁଁ ଦେଖୁଛି ତୁ ବଡ଼ ବୁଦ୍ଧିମାନ୍ । ସବୁ ତ ବୁଝିଯାଉଛୁ । ଏତିକି ଯଦି କରିଦେବୁ, ତା ହେଲେ ଆଜି ଦଶ ଟଙ୍କା କଣ, ଦୁଇଶ ଟଙ୍କା ପାଇବୁ ।" ପାଣୁଅ କହିଲା—"ହଉ ବାବୁ, ଆଗ ଚିଠିଖଣ୍ଡି ଦିଅନ୍ତୁ । ଅବିକା ମା ଶୋଇଥିବେ, ମୁଁ ଚିଠିଖଣ୍ଡି

ଚୂପ୍‌କରି ଦେଇଦେବ ।" ରାଜକିଶୋର ପକେଟରୁ ଚିଠିଖଣ୍ଡ ବାହାର କରି ତା ହାତକୁ ବଢ଼ାଇଦେଲେ ।

କିଶୋରୀ ପାଣୁଆ ହାତରୁ ଚିଠିଖଣ୍ଡ ନେଇ ଖୋଲିଲା । ପ୍ରଥମେ ହସ୍ତାକ୍ଷର ଦେଖି ଚମକି ପଡ଼ିଲା—ଏ ଯେ ତାର ପରିଚିତ ହସ୍ତାକ୍ଷର ! ଚାରିଦିନ ତଳେ ଏହି ହସ୍ତାକ୍ଷରର ଆଉ ଗଣ୍ଡେ ଲେଖା ପାଠ କରିଥିଲା ! ସେତେବେଳେ କିନ୍ତୁ ସେ ବିଷୟରେ ଭାବିବାକୁ ଅବସର ନ ଥିଲା ତାର ! ହାୟ ! ରାଜୁନନା ଯଦି ତାଙ୍କ ଘରୁ ଚାଲିଯାଇ ନ ଥାନ୍ତେ, ଆଜି ତାଙ୍କୁ ଏ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ୁଥାନ୍ତା କାହିଁକି ? ସେ କଣ କରିବେ ? ବାପାଙ୍କର ଯେଉଁ ନିଷ୍ଠୁର ବ୍ୟବହାର । ରାଜୁନନା ହେଲକୁ ଚାରିମାସ କାଳ ରହିଲେ । ଆଉ କେହି ଚାରି ଦିନ ସୁଦ୍ଧା ରହି ନ ଥାନ୍ତା । ରାଜୁ-ନନାଙ୍କ ପୂର୍ବରୁ ଆଉ ତିନି ଜଣ ଆସିଥିଲେ ପରା—କେହି ଜଣେ ହେଲେ ଦୁଇ ଦିନରୁ ତିନି ଦିନ ରହି ନାହାନ୍ତି । ରାଜୁନନା କି ଦେବ-ପ୍ରକୃତିର ଲୋକ । ସତେ କଣ ତାଙ୍କ ଦେଖା ମିଳିବ କେବେହେଲେ ? କିଶୋରୀର ଦୁଇ ଚକ୍ଷୁରୁ ଧାରାଶ୍ରାବଣର ଧାର ବହିଲା । ପାଣୁଆ ବୋକାଙ୍କ ପରି ଠିଆ ହୋଇ ଦେଖୁଥାଏ । ଶୋକାବେଗ ଟିକିଏ କମି ଆସିବାରୁ କିଶୋରୀ ପତ୍ରପାଠ କଲା !

ସ୍ନେହର କିଶୋରୀ !

ତମର ଲେଖା ପାଇଛି । ବିବାହରେ ତମେ ଅମତ କର ନାହିଁ । ବିବାହ ହେବ ବୋଲି ଭୟ କରନା । ଜାଣିଥାଅ ସେ ତମର କିଛି କରିପାରିବେ ନାହିଁ । ବିବାହ ଦେବା ଏଡ଼େ ସହଜ କଥା ନୁହେ । ତମେ ପ୍ରତ୍ୟେକ ବିଷୟ ମୋତେ ଜଣାଉଥାଅ । ମୁଁ ତାର ସୁବନ୍ଦୋବସ୍ତ କରୁଛି । ଭୟ କର ନାହିଁ । ତାଙ୍କ ସହିତ ଏକମତ ହୋଇ ସେମାନଙ୍କର ଗୁପ୍ତ ପରାମର୍ଶ ମୋତେ ଜଣାଅ । ଇତି ।

କିଶୋରୀ ମନ୍ତ୍ରପାଠ କରି ପାଣ୍ଡୁଆକୁ ପଚାରିଲେ, "ଏ ଗଛଟି ତୋତେ କିଏ ଦେଲା ?" ପାଣୁଆ କହିଲା "ଦୀନବନ୍ଧୁ ବାବୁଙ୍କ ଘରେ ତାଙ୍କର ଜଣେ ବନ୍ଧୁ କିଏ ଅଛନ୍ତି, ସେ ଦେଲେ ।" କିଶୋରୀ ଅତ୍ୟନ୍ତ ବିସ୍ମୟର ସହିତ ପ୍ରଶ୍ନ କଲେ, "ଦୀନବନ୍ଧୁ ବାବୁଙ୍କର ବନ୍ଧୁ ? ଦୀନବନ୍ଧୁ ବାବୁ କିଏ ?"

ପାଣୁଆ—ଦୀନବନ୍ଧୁ ବାବୁଙ୍କୁ ଜାଣ ନା ? ତାଙ୍କ ଘର ପରା ଆମ ଘରକୁ ଲଗିଛି । ବାହାରକୁ ଆସ, ମୁଁ ଦେଖାଇଦେଉଛି ।

ପାଣୁଆ ବାହାରକୁ ଗୁଲିଗଲା । କିଶୋରୀ ତାର ଅନୁସରଣ କଲେ । ରାଜକିଶୋର ରହୁଥିବା ଗୁଳ ଘରକୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା, "ଏଇ ଘରେ ସେ ବାବୁ ଅଛନ୍ତି, ଏ ଘର ଯେଉଁ କୋଠା ଉପରେ ହୋଇଛି, ସେ କୋଠା ଦୀନବନ୍ଧୁ ବାବୁଙ୍କର ।" କିଶୋରୀ ଅତିବ ଆଶ୍ଚର୍ଯ୍ୟ ହୋଇଗଲେ । ଗୁରୁ ଦିନ ତଳେ ଭଣ୍ଡାରୁଣୀ ଯେଉଁ ଲେଖା ଦେଖାଇଥିଲା, ସେଥିରେ ଏଇ ଗୁଳଘର ବିଷୟ ତ ଲେଖାଥିଲା । ସେ ସେହି ଗୁଳଘର ପାଖରେ ଲେଖା ପକାଇଥିଲେ । ତାର ଉତ୍ତର ମଧ୍ୟ ପାଇଛନ୍ତି । କିନ୍ତୁ ସେ ଘରେ ଅଛନ୍ତି ଦୀନବନ୍ଧୁ ବାବୁଙ୍କ ବନ୍ଧୁ । ସେ ଛଦ୍ମବେଶୀ ଭଣ୍ଡାରୁଣୀ କିଏ ? ହସ୍ତାକ୍ଷର ତ ଅବିକଳ ରାଜନନ୍ଦିନୀଙ୍କର । ରାଜନନ୍ଦିନୀ କଣ ଛଦ୍ମ ବେଶରେ ସେ ଦିନ ଆସିଥିଲେ ? ରାଜକିଶୋରଙ୍କ ପ୍ରତି କୃତଜ୍ଞତାରେ କିଶୋରୀର ଅନ୍ତର ଭରିଗଲା । ସେ ମନେ ମନେ ପ୍ରଭୁଙ୍କୁ ନମସ୍କାର କରି କହିଲେ "ପ୍ରଭୁ ! ରାଜନନ୍ଦିନୀଙ୍କ ଦୀର୍ଘାୟୁ କର ।" ତା ପରେ ପାଣୁଆକୁ ଲକ୍ଷ୍ୟ କରି କହିଲେ "ସେ ବାବୁଙ୍କ ନାଁ କଣ ପାଣୁ ?" ପାଣୁଆ ଟିକିଏ ଚିନ୍ତାକରି କହିଲା "ତାଙ୍କ ନାଁ ମୁଁ ଜାଣି ନାହିଁ । ବଡ଼ ଭଲଲୋକ ସେ । କି ସୁନ୍ଦର ଚେହେରା ! ସାକ୍ଷାତ ରାଜାପୁଅ । ରୂପକୁ ଗୁହଁ ଗୁଣ । କଥା କି ମିଠା । ବଣରେ

ପଶୁପକ୍ଷୀ ପୁଣ୍ଟା ସେ କଥାରେ ବଶ ହୋଇଯିବେ ସବୁ ।" ପାଣୁଆ ଅଦ୍ଭୁତ କେତେ କଣ କହୁଥାନ୍ତା; କିନ୍ତୁ ସେ ସମସ୍ତ ଶୁଣିବାକୁ କିଶୋରୀର ଧୈର୍ଯ୍ୟ କୁଳାଇଲା ନାହିଁ । ସେ ଉଦ୍‌ବଗ୍ନ ଭାବରେ ପ୍ରଶ୍ନ କଲା, "ଆଚ୍ଛା, ତାଙ୍କର ବୟସ କେତେ ହେବ କହିଲୁ ?"

"ବୟସ ବେଶୀ ନୁହେ—ତବିଶ ପଚିଶ ହେବ ।"

କିଶୋରୀର ଆଗ୍ରହ ଦେଖି ପାଣୁଆ ମନେ ମନେ ବଡ ଖୁସି ହୋଇ ଉଠିଲା । ଭାବିଲା, ଶିକାର ନିଶ୍ଚୟ ହାତରେ ପଡ଼ିବ । ରାଜ-କିଶୋରଙ୍କ ଆଡ଼କୁ ତାର ମନ ଆକୃଷ୍ଟ କରିବାକୁ କହିଲା, "ତମେ ଏମିତ କାହିଁକି ହେଉଛ ? ମୁଁ କାଲି ଦେଖାଇଦେବି ତାଙ୍କୁ । ସେମିତି ଲୋକ ସବୁ ଏ ବ୍ରହ୍ମାଣ୍ଡରେ ନ ଥିବେ । ତମରି ବର୍ଣ୍ଣ ତ, ଦୁହିଙ୍କଣ ଠିକ୍ ଭାଇ ଭଉଣୀ ପରି...... ।" କେଣିକି ଅଉ ତାର ପାଟି ଖୋଲିଲା ନାହିଁ । ଯାହା କହିବାକୁ ଯାଉଥିଲା, ସେ କଥା ଗୋପନ ରଖି କହିଲା, "ସତେ ବଡ଼ ସୁନ୍ଦର ରୂପ ।" କିଶୋରୀ କହିଲା, "ଆଚ୍ଛା, ଏ କଥା ଆଉ କେହି ଦେଖି ନାହାନ୍ତି ତ ?" "ମୁଁ କଣ ପିଲାଟି ହୋଇଛି ? ବାବୁ ମୋତେ କେତେ ତାଗିଦ କରି କହିଛନ୍ତି । ଗୁପତ କଥା ପଦାରେ ପକାଇଦେବି !" କିଶୋରୀ କହିଲା "ଆଚ୍ଛା ହଉ, ତୁ ଯା ।"

ପାଣୁଆ ମନେ ମନେ ଅସୀମ ଆନନ୍ଦ ଉପଭୋଗ କରୁ କରୁ ତଳ ମହଲକୁ ଚାଲିଗଲା ।



## —ସପ୍ତଦଶ ପରିଚ୍ଛେଦ—

କିଶୋରୀ ସବାରରୁ ପଳାଇ ଯାଇ ଦୟାନିଧି ପଟ୍ଟନାୟକଙ୍କ ଗୃହରେ ଆଶ୍ରୟ ନେଇଥିଲା, ପାଠକଗଣ ଅବଗତ ଅଛନ୍ତି । ଦୟାନିଧି

ପଟ୍ଟନାୟକ ତାହାର ସମସ୍ତ ଇତିହାସ ଶୁଣିଲେ । ତାଙ୍କ ମନମଧ୍ୟରେ ଏକ ପୈଶାଚିକ ଭାବର ଉଦୟ ହେଲା । ସେ ତାଙ୍କର ସ୍ତ୍ରୀଙ୍କ ସହିତ ପରାମର୍ଶ କରି ସ୍ଥିର କଲେ, କିଶୋରୀକୁ ତାର ପିତା ନିକଟକୁ ଯିବାକୁ ଦେବେ ନାହିଁ । କୌଣସି ଉପାୟରେ ତାକୁ ଝିଅର ପାଖରେ ରଖିନେବେ । ବାହାରେ କିନ୍ତୁ ତାର ଦୁଃଖରେ ସମବେଦନା ପ୍ରକାଶ କରି ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ତାକୁ ତାର ପିତ୍ରାଳୟରେ ଯାଇ ଆସିବାକୁ ଦୃଢ଼ ପ୍ରତିଜ୍ଞା କଲେ । କିଶୋରୀ ମନେ ମନେ କୃତକୃତ୍ୟ ହୋଇ ତାଙ୍କର ପଦତଳେ ପ୍ରଣାମ କରି କହିଲା—"ଆପଣ ମୋର ଧର୍ମର ବାପ । କଷ୍ଟ ସ୍ୱୀକାର କରି ମୋତେ ଶୀଘ୍ର ମୋର ବାପାଙ୍କ ପାଖରେ ଯାଇ ଆସନ୍ତୁ ।" ଦୟାନିଧି ପଟ୍ଟନାୟକ କିଛି କହିବା ପୂର୍ବରୁ ତାଙ୍କର ସ୍ତ୍ରୀ କହିଲେ, "ହଁ ମା, ତାଙ୍କର ମୋର ଏବେକ୍ଷଣି ସେଇ କଥା ପଡ଼ିଥିଲା । କରଣ ଘର ଝିଅ—ବାହା ହୋଇ ନାହୁଁ । ପୁଣି ରାତିରେ ଘରୁ ଗୋଡ଼ କାଢ଼ିଚୁ । ଏମିତି ଭାବରେ ନେଇ ଯାଇ ଆସିଲେ ସବୁ କଥା ପ୍ରକଟ ହୋଇଯିବ । ଲୋକେ ବାର ନିନ୍ଦା ରଟନା କରିବେ । ବାପା ବ ଘରେ ସ୍ଥାନ ଦେବେ ନାହିଁ । ସେ ଅପମାନ ମରଣଠୁ ବଳିଯିବ । ତୁ ଥୟ ଧର, ସେ·········।" କିଶୋରୀ ବାଧା ଦେଇ କହିଲା,"ବାପା ସେପରି ଲୋକ ନୁହନ୍ତି । ମୋତେ ଦଣ୍ଡେ ନ ଦେଖିଲେ ତାଙ୍କୁ ପୃଥିବୀ ଅନ୍ଧାର ଦିଶେ । ସେ କଣ···" "ଓଲି ଝିଅଟା । ମୁଁ କଣ କହିଲି ବାପା ତୋର ଭଲ ପାନ୍ତି ନାହିଁ ତତେ ? ପୁଅ ଝିଅ ଯେତେ ଖରାପ ହେଲେ ସୁଦ୍ଧା ବାପ ମାଙ୍କ ଆଖିରେ କଣ ଅସୁନ୍ଦର ଦିଶନ୍ତି ? ବାପା ତୋତେ ଖୁବ୍ ଭଲ ପାନ୍ତି, ଖୁବ୍ ସ୍ନେହ କରନ୍ତି । କିନ୍ତୁ ପଚିଶ ଜଣଙ୍କ କଥାରୁ ସେ ତ ବାହାରିଯିବେ ନାହିଁ—ପଚିଶ ଜଣଙ୍କ ମନ ରଖିବା ଲାଗି ଶିବେଇ ସାନ୍ତରା ପରା କୋଣାର୍କ ଦେଉଳ ଉପରେ ନିଜ ପୁଅକୁ ମାରି ପକାଇ-ଥିଲେ । କହନ୍ତି ଜାତି ପାଖରେ ହାତୀ ଯାଏ ନାହିଁ । ପଚିଶ ଜଣ ଯାହା

କହିବେ, 'ମଙ୍ଗରାଜେ, ଝିଅଟା ତମର କୁଳରୁ ଯାଇଛି, ତାକୁ ଘରେ ରଖିବ ନାହିଁ'—ମଙ୍ଗରାଜେ ସେତେବେଳେ କଣ କରିବେ ? ଯେତେ ହେଲେ ସେ ଜଣେ ଲୋକ ନା , ପାଞ୍ଚ ଜଣଙ୍କ କଥାରୁ କଣ ବାହାରି-ଯିବେ ? ତୁ ପିଲା ଲୋକ, ଜାତି ନୀତି କଥା କିଛି ଜାଣି ନାହୁଁ । ମୁଁ ଯାହା କହୁଛି ଶୁଣ । ଡରଭୟ ହୁଅ ନା । ଅଜି ସାହାନ୍ତାରେ ଅମେ କଟକ ଯିବୁ । ତୋତେ ସଙ୍ଗରେ ନେଇଯିବୁ । ତୁ କଟକରେ ଅମ ପାଖରେ ରହିବୁ । ବାବୁ ଆଗ ଯାଇ ତୁମ ବାପାଙ୍କ ସଙ୍ଗରେ ଦେଖା କରି କଥାବାର୍ତ୍ତା କରିବେ । ଯେମିତି କେହି କିଛି ଅପବାଦ ଉଠାଇ ନ ପାରନ୍ତି, ସେ ବିଷୟରେ ବନ୍ଦୋବସ୍ତ କରି ତୋତେ ନେଇଯିବେ ସୁବିଧା ଦେଖି । ଅଜି ରୁ ଯେତେ ଦିନ ଅମ ଘରେ ରହିବୁ, ଲୁଚି କରି ରହିବୁ । ପଦା ଲୋକଙ୍କୁ ଦେଖା ଦେବୁ ନାହିଁ କି ତାଙ୍କ ପାଖରେ କିଛି କହିବୁ ନାହିଁ । ବୁଝିଲୁ ? ତାହାହେଲେ ସବୁ ଭଲ ହେବ—ମାନ ମର୍ଯ୍ୟାଦା ସବୁ ରହିବ, ତୁ ବି ତୋର ବାପା ପାଖକୁ ଯାଇପାରିବୁ ।"

କଥାଟା କଶୋରୀ ମନକୁ ପାଇଲା । ସେ କହିଲା, "ହଉ, ଅପଣ ଯାହା ଭଲ ମନେ କରନ୍ତି କରିବେ ।" ସେହି ରାତି ଶେଷରେ ଦୟାନିଧି ପଟ୍ଟନାୟକ ତାଙ୍କର ସ୍ତ୍ରୀ ଓ କଶୋରୀକୁ ଘେନି କଟକ ଯାତ୍ରା କଲେ ।

ଦୟାନିଧି ପଟ୍ଟନାୟକ ହେଉଛନ୍ତି ଅମ୍ଭମାନଙ୍କର ପରିଚିତ ସିରସ୍ତାଦାର ଦୟାନିଧି ବାବୁ । ଏ ସ୍ଥାନରେ ତାଙ୍କର ଅଜ ଟିକିଏ ବିଶେଷ ପରିଚୟ ଦେବା ଅବଶ୍ୟକ । ପାଠକମାନେ ଓଡ଼ିଶାରେ ସ୍ୱନାମ-ଧନ୍ୟ ଚୋର ବହାସି ନାୟକକୁ ଜାଣନ୍ତି ବୋଧହୁଏ । ସେ ସାଧାରଣ ଚୋର ନୁହେ —ଚୋରଙ୍କ ସରଦାର । ସେ ଗୋଟିଏ ସ୍ୱତନ୍ତ୍ର ଦସ୍ୟୁ ଦଳ ଗଢ଼ିଥିଲା । ସେ ଦଳରେ ପ୍ରାୟ କୋଡ଼ିଏ ପଚିଶି ଜଣ ଦସ୍ୟୁ

ଥିଲେ । ଅସ୍ମମାନଙ୍କର ସିରସ୍ତାଦାର ଦୟାନିଧି ବାବୁ ସେ ଦସ୍ୟୁ ଦଳର ପୃଷ୍ଠପୋଷକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବହାଗିରିର ମାଲସବୁ ଆଣି ତାଙ୍କ ଜମା ଦେଇଯାଏ । ସେ ଅଳଂକାର ଦୋକାନୀ ପୂରନଲାଲ ସାହାଯ୍ୟରେ ସେ ସମସ୍ତ ବିକ୍ରୟ କରାଇ-ଦିଅନ୍ତି । ସେଥିପାଇଁ ଉଭୟେ ବହାଗିରିଠାରୁ କିଛି ଅଂଶ ମଧ୍ୟ ପାନ୍ତି । ସେହି ସୂତ୍ରରେ ବହାଗିରି ସହିତ ସିରସ୍ତାଦାରଙ୍କର ଖୁବ୍ ସଦ୍‌ଭାବ ଓ ଘନିଷ୍ଠତା । ସେ ଦିନ ରାତିରେ କଣେଇ ଯେତେବେଳେ ସିରସ୍ତା-ଦାରଙ୍କୁ ତାର ସମସ୍ତ ଇତିହାସ କହିଲା, ସିରସ୍ତାଦାରଙ୍କର ବହାଗିରି ନାୟକ କଥା ମନେ ପଡ଼ିଗଲା । ବହାଗିରି ଅବିବାହିତ । ବିବାହପାଇଁ ସେ ବହୁବାର ସିରସ୍ତାଦାରଙ୍କୁ କହିଛି । ସିରସ୍ତାଦାର ମଧ୍ୟ ଯଥାସାଧ୍ୟ ଚେଷ୍ଟା କରିବାରେ ଅବହେଳା କରି ନାହାନ୍ତି ; ମାତ୍ର ବହାଗିରିର ଇଚ୍ଛାମତ କନ୍ୟାଟିଏ କେଉଁଠାରେ ପାଇ ନାହାନ୍ତି ।

କଣେଇର ରୂପ, ଗୁଣ, ବୟସ, ଜାତି କୌଣସି ବିଷୟରେ ବାଛିବାକୁ ନାହିଁ । ତାକୁ ବହାଗିରି ହସ୍ତରେ ଅର୍ପଣ କରିବାର ସ୍ଥିର କରି ତାର ଅଜ୍ଞାତରେ ସିରସ୍ତାଦାର ଏକ ଷଡ଼୍‌ଯନ୍ତ୍ର କରି ବସିଲେ ।

କଣେଇ କଟକ ଆସିବାର ଦୁଇ ଦିନ ହୋଇଗଲାଣି । ସେ ଦିନ ସନ୍ଧ୍ୟା ସମୟରେ ସେ ନିଜନ ଗୃହଟିରେ ବସି ଭାବୁଛି—"ବାବୁ ଆଜି ଯାଇଛନ୍ତି ଆମ ଗାଁକୁ—ଅବିକା ଫେରିବେ । ବାପା ତାଙ୍କ ସଙ୍ଗରେ ଆସୁଥିବେ ନିଶ୍ଚୟ ।" ତାର ଆଶାଭରା ପ୍ରାଣରେ ଭବିଷ୍ୟତର କେତେ କଥା ସେ ଭାବି ଯାଉଛି । ଦୟାନିଧି ବାବୁଙ୍କର ପାଦ ଶୁଭିଲା ଅଗଣାରେ । ସେ ଦୌଡ଼ି ଆସି କହିଲା "ବାପା କାହାନ୍ତି ?" ଦୟାନିଧି ବାବୁ ନିତାନ୍ତ ବିଷଣ୍ଣଭାବରେ କହିଲେ, "ମା, ତୋ କର୍ମ ବଡ଼

ଗ୍ଲୋଟ ।" କଣୋଗ୍ନି ସଭୟ ଚକିତ ଚଞ୍ଚଳ କଣ୍ଠରେ କହିଲା, "ବାପା କଣ ନାହିଁ କଲେ ମୋତେ ନବାକୁ ?"

ଦୟାନିଧି—ସନ୍ତାନ ଯେତେ ଦୋଷ କଲେ ସୁଦ୍ଧା ପିତାମାତା କଣ ଅନାଦର କରନ୍ତି ?

କଣୋଗ୍ନି—ଅଜ କଣ ଗାଁ ଲୋକ ମନା କଲେ ?

ଦୟାନିଧି ବାବୁ ଗୋଟାଏ ଦୀର୍ଘନିଶ୍ୱାସ ତ୍ୟାଗ କରି କହିଲେ, "ଗାଁ ଲୋକେ କଣ ବାପାକୁ ଚୋର ରଖିଛନ୍ତି ? ଜଗନ୍ନାଥ ବାବୁଙ୍କର ଘର ଗୁଳ ପୋଡ଼ି ଅଛି ।" କଣୋଗ୍ନି ବ୍ୟାକୁଳଭାବରେ କହିଲା "କଣ ହେଲା ଘରଦ୍ୱାର ? ବାପା ମୋର କୁଆଡେ ଗଲେ ?"

ଦୟାନିଧି—ମୁଁ ପ୍ରଥମେ ଯାଇ ଜଗନ୍ନାଥ ବାବୁଙ୍କ ଘର ପଚାରିବାରୁ ଗାଁ ଲୋକେ କହିଲେ, "ଆଜିକି ଗୁରି ଦିନ ହେଲା ତାଙ୍କ ଘର ପୋଡ଼ି ଯାଇଛି । ଜଗନ୍ନାଥ ବାବୁ କେଉଁଆଡେ ଯାଇଛନ୍ତି, କେହି ଜାଣନ୍ତି ନାହିଁ । ରାତିରେ ତ ନିଆଁ ଲାଗିଲା । ସେ ବୋଧହୁଏ ସେହି ନିଆଁରେ ପୋଡ଼ି ଯାଇଛନ୍ତି । ତା ପରେ ମୁଁ ଘରପର୍ଯ୍ୟନ୍ତ ଗଲି । ଦେଖିଲି ସତକଥା । ଆଜିପର୍ଯ୍ୟନ୍ତ ନିଆଁ ଲିଭି ନାହିଁ ।"

ଦୟାନିଧି ବାବୁଙ୍କର ସମସ୍ତ କଥା କଣୋଗ୍ନି ଶୁଣିପାରିଲା ନାହିଁ । 'ସେ ବୋଧ ହୁଏ ସେହି ନିଆଁରେ ପୋଡ଼ି ଯାଇଛନ୍ତି'—ଏହିତକ ଶୁଣିଲାମାତ୍ରେ ତାକୁ ଦୁଣଦଗ ଅନ୍ଧାର ଦିଶିଲା । ସେ 'ବା—ପା' ଏହି ପଦଟି ବଡ଼ କଷ୍ଟରେ ଉଚ୍ଚାରଣ କରି ସଂଜ୍ଞାହୀନ ହୋଇ ପଡିଲା । ଦୟାନିଧି ବାବୁ ଓ କ୍ଷେହମଣିଙ୍କ ସେବା ଶୁଶ୍ରୂଷାରେ ସେ କେତେକ ମୂହୂର୍ତ୍ତ ପରେ ଚୈତନ୍ୟ ଲଭ କରି କାନ୍ଦି କାନ୍ଦି କହିଲା, "ମୋତେ ଆମ ଗାଁରେ ଛାଡ଼ି ଆସନ୍ତୁ, ମୁଁ ଦେଖିବି ମୋ ବାପା କେଉଁଠି......" ଶୋକାବେଗରେ ଅଉ କହିପାରିଲା ନାହିଁ ।

ଦୟାନିଧି ବାବୁ ଓ କ୍ଷେତ୍ରମଣି ବହୁତ ବୁଝାଇଲେ ; କିନ୍ତୁ କିଶୋରୀର ଲୋତକଧାରା ବନ୍ଦ ହେଲା ନାହିଁ କି ତାର ଗାଁକୁ ଯିବାର ଇଚ୍ଛା ନିବୃତ୍ତି ହେଲା ନାହିଁ । ସେ ଦୟାନିଧି ବାବୁଙ୍କର ଗୋଡ଼ତଳେ ପଡ଼ି କହିଲା "ଆପଣ ମୋର ବାପ, ମୁଁ ଆପଣଙ୍କ ଧର୍ମର ଝିଅ । ଝିଅ ଲାଗି ଟିକିଏ କଷ୍ଟ ସ୍ୱୀକାର କରନ୍ତୁ ।" ତା ପରେ କ୍ଷେତ୍ରମଣିଙ୍କୁ ଚାହିଁ କହିଲା, "ମା, ଆପଣଙ୍କ ହୃଦୟରେ ଦୟା ଅଛି ନାହିଁ । ମୋ ଲାଗି ବାପାଙ୍କୁ ଟିକିଏ କହନ୍ତୁ ।" କିନ୍ତୁ ଦୟାନିଧି ବାବୁଙ୍କ ହୃଦୟରେ ଦୟା ଆସିଲା ନାହିଁ । ସେ କପଟ ଆଶ୍ୱାସନା ଦେଇ କହିଲେ "ମା, ଆଜି ତ ଆଉ ସମୟ ନାହିଁ—କାଲି ନିଶ୍ଚୟ ତୋତେ ଛାଡ଼ି ଆସିବି ।"

କାଲି କାଲି ବୋଲି ଦିନ ଦିନ କଟିଗଲା । ଦୟାନିଧି ବାବୁ ନାନା କାରଣ ଦେଖାଇ କିଶୋରୀକୁ ଠକିବାକୁ ଲାଗିଲେ । କ୍ଷେତ୍ର-ମଣି ଏଣେ ବୁଝାଇବାକୁ ଲାଗିଲେ, "କରଣ କୁଳ, ବାପ ନାହିଁ, ଘର ନାହିଁ, କାହା ପାଖରେ ରହିବୁ ? ତୋର ପୁଣି ଭରା ଯୌବନ ....."

ଇତ୍ୟାଦି ବହୁ କଥା । କିଶୋରୀ ବାଳିକା ନୁହେ, ସେ ବୁଝିପାରିଲା— ଦୟାନିଧିବାବୁ ଓ କ୍ଷେତ୍ରମଣି ତାକୁ ଛାଡ଼ିବାକୁ ଇଚ୍ଛୁକ ନୁହନ୍ତି । ତାର ସନ୍ଦେହହେଲା—ଆଉ କିଛି ଦୁରଭିସନ୍ଧି ଅଛି କି ତାଙ୍କର ? କିଶୋରୀ ସେ ବିଷୟରେ ଯେତିକି ଭାବିବାକୁ ଲାଗିଲା, ତାର ସନ୍ଦେହ ବଢ଼ିଲା । ତାର ଅନ୍ତର ମଧ୍ୟରୁ ଯେପରି କିଏ କହିଉଠିଲା—"ବାପା ତୋର ମରି ନାହାନ୍ତି—ଘର ପୋଡ଼ିଯାଇ ନାହିଁ···ଏ ସବୁ ମିଥ୍ୟା ରଚନା ।" କିନ୍ତୁ ଉପାୟ କଣ ? ଏମାନଙ୍କ କବଳରୁ ମୁକ୍ତ ହେବାର ଉପାୟ କାହିଁ ?

ଦୟାନିଧି ବାବୁ କମ୍ ଧୂର୍ତ୍ତ ନୁହନ୍ତି । କିଶୋରୀର ମତିଗତି ଦେଖି ସେ ମଧ୍ୟ ସନ୍ଦେହ କଲେ । ଅନ୍ୟ କେହି ଯଦି କିଶୋରୀର ପରିଚୟ ପାଏ, ସମସ୍ତ କୌଶଳ ତାହେଲେ ବୃଥା ହେବ । ଅଧିକନ୍ତୁ

ତାଙ୍କର ଅବସ୍ଥା ଯେ କପରି ଶୋଚନୀୟ ହୋଇପଡ଼ିବ, ତା କଳ୍ପନାର ଅଗମ୍ୟ । ନିଜକୁ ନିରାପଦ କରିବା ପାଇଁ ସେ ସେହି ଦିନଠାରୁ କିଶୋରୀକୁ ପାଗଳିନୀ ନାମରେ ଅଭିହିତ କରି ନଜରବନ୍ଦରେ ରଖିଲେ । ତାକୁ ବର୍ଷେ କାଳ ବନ୍ଦିଶାଳା କଷ୍ଟ ସହିବାକୁ ପଡି ନ ଥାନ୍ତା, ବିହାରୀ ଯଦି ମୁକ୍ତ ଥାନ୍ତା । ବିହାରୀ ସେତେବେଳକୁ ପୁରୀ ଜେଲରେ । ଛ ବର୍ଷ ନିମିତ୍ତ ଜେଲ୍ ଦଣ୍ଡ ପାଇଥିଲା ସେ । ଦୟାନିଧି ବାବୁ କିନ୍ତୁ ଜାଣନ୍ତି ସେ ନିଶ୍ଚୟ କୌଶଳକ୍ରମେ ଅଳ୍ପ ଦିନ ମଧ୍ୟରେ ଜେଲରୁ ପଳାଇ ଆସିବ । ସେଥିପାଇଁ ତାର ପ୍ରତୀକ୍ଷାରେ କିଶୋରୀକୁ ଗୋପନରେ ରଖିଥିଲେ ।

ପାଠକମାନଙ୍କର ମନେ ଥିବ, ରାଜକିଶୋର ଯେତେବେଳେ ମାଳତୀଠାରେ ହାର ଦେଖି ସେ ହାର କିଶୋରୀର ବୋଲି ସନ୍ଦେହ କଲେ ଏବଂ ହେମ ସାହାଯ୍ୟରେ ଅନୁସନ୍ଧାନ କରୁଥିଲେ, ସେ ହାର ଡାଲଟେନ ରାଜାଙ୍କ ଦାସୀଠାରୁ ପାଇଥିଲା ବୋଲି ମୋହନ ଦାସ କହିଥିଲା । ରାଜକିଶୋର ସେଥିପାଇଁ ଡାଲଟେନ ପର୍ଯ୍ୟନ୍ତ ଯାଇଥିଲେ; କିନ୍ତୁ ସେ ସମସ୍ତ ମିଥ୍ୟା । ଦୟାନିଧି ବାବୁ ପୁରୀ ଯାଇଥିଲେ କେତେ ମାସ ତଳେ । କିଶୋରୀ ମଧ୍ୟ ତାଙ୍କ ସଙ୍ଗରେ ପୁରୀ ଯାଇଥିଲା । ମୋହନ ଦାସ ସହିତ ତାର ଜଗନ୍ନାଥ ମନ୍ଦିରରେ ଦେଖାହେଲା । ସେ ମୋହନଦାସକୁ ହାର ଦେଲା ଏବଂ ସନ୍ଧ୍ୟା ସମୟରେ ତା ସଙ୍ଗରେ ପଳାଇ ଆସିବାର ସ୍ଥିରକରି ତାର ବସା ଠିକଣା କହିଲା, "ଆମେ ଡାଲଟେନ କୋଠି ପାଖରେ ଅଛୁଁ ।" ମୋହନଦାସ ଗୁଲିଖୋର; ସେ ବୁଝିଲା "ଡାଲଟେନ କୋଠିରେ ଅଛୁଁ ।" ସେଥିପାଇଁ ଡାଲଟେନ ରାଜାଙ୍କର ଦାସୀ ବୋଲି ଅନୁମାନ କରି ନେଇଛି ।



## —ଅଷ୍ଟାଦଶ ପରିଚ୍ଛେଦ—

ରାଜକିଶୋର ବାରଣ୍ଡାରେ ବସି ଦାନ୍ତ ଘଷୁଛନ୍ତି, ଉପରୁ କାଗଜ ଖଣ୍ଡେ ଆସି ତାଙ୍କ ସମ୍ମୁଖରେ ପଡ଼ିଗଲା । ସେ ଉଠାଇ ନେଇ ଦେଖିଲେ, କିଶୋରୀର ଲେଖା । ଅଗ୍ରହାନ୍ୱିତ ଭାବରେ ପାଠ କଲେ— "ରାଜୁନନା !"

ରାଜକିଶୋର ଚମକି ଉଠିଲେ । ଏଁ—ସେ ତାକୁ ଚିହ୍ନିଲା କିପରି ? ପତ୍ରଗତ ବିଷୟ ଜାଣି ବାକୁ ରାଜକିଶୋରଙ୍କର ମନ ବ୍ୟାକୁଳ । ସେ ବିଷୟରେ ସେ ବେଶି କିଛି ଭାବିବାକୁ ଅବସର ପାଇଲେ ନାହିଁ । ପତ୍ର ପାଠ କରିବାକୁ ଆରମ୍ଭ କଲେ :—

—ତମେ ଲୁଚିଲେ ସୁଦ୍ଧା ମୋର ଦେଖି ପାରିବାର କ୍ଷମତା ଅଛି । ଚିହ୍ନି ସାରିଲିଣି—ଆଉ ଲୁଚିବା ଦରକାର ନାହିଁ । କାଲି ଯେତେବେଳେ ଜାଣିପାରିଲି ତମେ ଅତି ନିକଟରେ ଅଛ, ମୋର ଛାତି ଫୁଲି ଉଠିଲା ଆନନ୍ଦରେ । ଆଉ କୌଣସି କଥାକୁ ଭୟ ନାହିଁ । ବନ୍ଦିଶାଳାରେ ଥାଇ ସୁଦ୍ଧା ଘରଠାରୁ ଅଧିକ ଆନନ୍ଦ ଅନୁଭବ କରୁଛି । ସତ କହୁଛି ଘରେ ଥିଲେ ଅଜା ଏତେ ଆନନ୍ଦ ମୁଁ ପାଇ ନ ଥାନ୍ତି । ତମେ ମୋର ଶିକ୍ଷାଦାତା ଗୁରୁ । ତମକୁ କଣ ମୋ ହୃଦୟ ଅଜଣା ? ମୁଁ କାଲିଠାରୁ ନୂଆ ପ୍ରାଣ ପାଇଛି । ବହୁତ କଥା ଅଛି ତମ ସାଙ୍ଗରେ...ଭଗବାନ ଏ କାରାରୁ ମୁକ୍ତ କଲେ—ନା, ଯାଉ ସେ କଥା ।

କାଲି ରାତିରେ ବାପା ବୋଉ କଥା ହେଉଥିଲେ—କଟକ ଆର ପାଖରେ ଚୂଡଙ୍ଗ ହ୍ରଦ ବୋଲି ଗୋଟିଏ ହ୍ରଦ କି ଗାଁ କଣ ଅଛି । ସେଠି ଭାରି ଜଙ୍ଗଲ, ଦିନବେଳେ ସୁଦ୍ଧା ଭୟରେ କେହି

ସେ ଜଙ୍ଗଲରେ ପଶନ୍ତୁ ନାହିଁ । ସେହିଠାରେ ମୋର ବାହାଘର ହେବ । ଅଙ୍କ ଠିକ୍ ହୋଇଛି । କଣ ଉତ୍ତର ଲେଖିବ । ଉତ୍ତରକୁ ଅନାଇ ରହିଲି । ଇତି ।

ସ୍ନେହର
କିଶୋରୀ

ରାଜକିଶୋର ସଙ୍ଗେ ସଙ୍ଗେ ଉତ୍ତର ଲେଖି ବସିଲେ :—

ସ୍ନେହର କିଶୋରୀ,

କୌଣସି ବିଷୟରେ ଚିନ୍ତା କର ନାହିଁ । ତମର କେହି କିଛି ଅନିଷ୍ଟ କରିପାରିବେ ନାହିଁ । ମୁଁ ବରାବର ସଙ୍ଗେ ସଙ୍ଗେ ଅଛି । ଘର ଲୋକ ତମକୁ ଅନ୍ୟତ୍ର ଯିବାକୁ କହିଲେ ଯିବ—ଆପତ୍ତି କରିବ ନାହିଁ । କେଉଁଠାକୁ ଯିବ ଓ କିପରି ଯିବ, ଯିବାପୂର୍ବରୁ ମୋତେ ଜଣାଇଦେବ କେବଳ । ଭୁଲିବ ନାହିଁ । ଇତି ।

ଶୁଭାକାଙ୍କ୍ଷୀ
ରାଜୁ

ଦିନମଧ୍ୟରେ ଦୁଇ ଚାରି ଥର ରାଜକିଶୋରଙ୍କ ଦେଖା କରିବା ପାଣ୍ଡୁଆର ଅଭ୍ୟାସ । ସେ ଦୈନିକ ଅଭ୍ୟାସବଶତଃ ସେ ଦିନ ସକାଳ ସାତଟାବେଳକୁ ରାଜକିଶୋରଙ୍କ ପାଖରେ ଆସି ପହଞ୍ଚିଲା । ରାଜକିଶୋର ମଧ୍ୟ ଅଭ୍ୟାସାନୁଯାୟୀ କୁଶଳ ପ୍ରଶ୍ନ ପଚାରିଲେ । ତା ପରେ ଖଣ୍ଡେ ପାଞ୍ଚଟଙ୍କାର ନୋଟ ସହିତ ସଦ୍ୟଲିଖିତ ପତ୍ର ଖଣ୍ଡି ତା ହାତକୁ ବଢ଼ାଇଦେଲେ । କହିଲେ "ପାଣ୍ଡୁ, ଏ ଖଣ୍ଡିକୁ ବାୟାଣୀକୁ ଦେବୁ । ସାବଧାନ, ଯେପରି କେହି ନ ଜାଣନ୍ତି ।"

ପାଣୁଆ ଚାଲିଗଲା । ରାଜକିଶୋର ଭିତରବରରେ ଗାଧୁଆଟା ଶେଷ କରିଦେଇ ଠିକ୍ ଅଠଟା ବେଳକୁ ସହର ଭିତରକୁ ବାହାରି-ଗଲେ ।

ସନ୍ଧ୍ୟା ହୋଇ ଗଲଣି । ରାଜକିଶୋର ତାଙ୍କର ଶୟନ କକ୍ଷଟିରେ ଆରାମଚୌକି ଉପରେ ପଡ଼ି ଉର୍ଦ୍ଧ୍ୱକୁ ଗୃହଁ କଣ ଭାବୁ-ଛନ୍ତି , ପାଣୁଆ ତାଙ୍କ ଉପରକୁ କାଗଜ ଖଣ୍ଡେ ପକାଇ ଦେଇ କହିଲା, "ବାବୁ, ମୋର ବହୁତ କାମ—ଯାଉଛି ।" ସଙ୍ଗେ ସଙ୍ଗେ ଦ୍ରୁତଗତିରେ ଗୃହମଧ୍ୟରୁ ବାହାରିଗଲା । ରାଜକିଶୋର ସେ ଲେଖାଖଣ୍ଡି ପାଠକଲେ ।

ରାଜନନା,

ଆଜି ରାତି ନଅଟାରେ ଆମେ ସମସ୍ତେ ପୁରୀ ଯିବୁଁ ବୋଲି ବୋଜ କରୁଛନ୍ତି । ପୁରୀ ଯିବା କଥା ମିଛ । ପୁରୀ ବାହାନାରେ ଚୂଡ଼ଙ୍ଗ ହ୍ରଦକୁ ନେଇଯିବେ ବୋଧହୁଏ । ପୁରୀ ହେଉ ବା ଚୂଡ଼ଙ୍ଗ ହ୍ରଦ ହେଉ, ତମ କଥା ମାନି ଯାଉଛି । ଇତି ।

ସ୍ନେହର
କିଶୋରୀ

ରାଜକିଶୋର ସେ ପତ୍ରଖଣ୍ଡି ପକେଟରେ ପକାଇ ବାହାରିଗଲେ ସିଧା ଗୃନ୍ଦନଚୌକ ଥାନାକୁ । ସେଠାରେ ଅଧଘଣ୍ଟା କାଳ ସବଇନ୍ସ-ପେକ୍ଟରଙ୍କ ସଙ୍ଗରେ କଣ ପରାମର୍ଶ କଲେ । ତା ପରେ ବିଦାୟ-ସୂଚକ ନମସ୍କାର କରି ବାହାରି ଆସିଲେ । ରାଜକିଶୋର ବିଦାୟ ହୋଇ ଆସିବା ପରେ ପରେ ସବ୍‌ଇନ୍ସପେକ୍ଟର ଚାରି ଜଣ କନେଷ୍ଟ-ବଲଙ୍କୁ ଡାକି କହିଲେ "ତୁମ୍ଭମାନଙ୍କୁ ବର୍ତ୍ତମାନ ଚୂଡ଼ଙ୍ଗ ହ୍ରଦ ଯିବାକୁ ହେବ । ଶୀଘ୍ର ପ୍ରସ୍ତୁତ ହୋଇ ଆସ ।"

ରାଜକିଶୋର ପୋଲିସ ସାହେବଙ୍କ କୋଠିକୁ ଯାଇ ତାଙ୍କ ସହିତ ଦେଖାକଲେ । ଉଭୟଙ୍କ ମଧ୍ୟରେ ଏକାନ୍ତରେ କଣ ପରାମର୍ଶ

ହେଲା । ତାପରେ ପୋଲିଶ ସାହେବ ରାଜକିଶୋରଙ୍କୁ ସଙ୍ଗରେ ନେଇ ମାଜିଷ୍ଟ୍ରେଟ ସାହେବଙ୍କ କୋଠିକୁ ଗଲେ । ସେଠାରେ ତିନିଜଣଙ୍କ ମଧ୍ୟରେ ପରାମର୍ଶ ହୋଇ ସ୍ଥିର ହେଲା, ଷାଠିଏ ଜଣ ଅର୍ମ୍ଡ୍ ପୋଲିଶ ଓ ଦୁଇ ଜଣ ସବ୍‌ଇନ୍ସପେକ୍ଟରଙ୍କୁ ଅତି ଶୀଘ୍ର ଚୁଡ଼ଙ୍ଗ ହ୍ରଦ ପାଖ ଜଙ୍ଗଲକୁ ପଠାଇବାକୁ ହେବ । ସେଥିପାଇଁ ଆବଶ୍ୟକମତେ ମୋଟରକାର ଓ ଲରିର ବନ୍ଦୋବସ୍ତ ମଧ୍ୟ ହୋଇଗଲା ।

ରାଜକିଶୋର ବସାରେ ପହଞ୍ଚିଲା ବେଳକୁ ରାତି ସାଢ଼େ ଆଠଟାରୁ ବଳିଗଲିଣି । ସେ ପାଣୁଆକୁ ବହୁତ ଅପେକ୍ଷା କଲେ । କେତେବେଳେ ସିରସ୍ତାଦାରଙ୍କ ଦ୍ୱାରକୁ ମୋଟର ଆସିବ, ସେହି ମୁହୂର୍ତ୍ତକୁ ଅପେକ୍ଷା କରି ସେ ବାରଣ୍ଡାରେ ବସି ରହିଲେ । ସେ ଦିନ ରାତିରେ ତାଙ୍କର ଖାଇବା ହେଲା ନାହିଁ ।

ନଅଟା ବାଜିଲା—ଦଶଟା ବାଜିଲା; ତଥାପି ମୋଟରର ଦେଖା ନାହିଁ । ରାଜକିଶୋର କିଶୋରୀର ଚିଠି ଖଣ୍ଡି ଆଉ ଥରେ ପାଠକରି ଦେଖିଲେ, ପରିଷ୍କାର ଲେଖାଅଛି "ଆଜି ରାତି ନଅଟାରେ ଆମେ ସମସ୍ତେ ......"...କିନ୍ତୁ ଦଶଟା ବାଜିଗଲା, ମୋଟରର ଦେଖା ନାହିଁ, କାରଣ କଣ ? ସିରସ୍ତାଦାର କଣ ଜାଣିପାରିଲେ ଏ ସବୁ ଷଡ଼ଯନ୍ତ୍ର ? ରାଜକିଶୋର କେତେ କଣ ଭାବିବାକୁ ଲାଗିଲେ ।

ଠିକ୍ ସାଢ଼େ ଦଶଟା ସମୟରେ ମୋଟର ଆସି ସିରସ୍ତାଦାରଙ୍କ ଦ୍ୱାର ସମ୍ମୁଖରେ ଠିଆ ହୋଇଗଲା । ପ୍ରାୟ ପାଞ୍ଚ ମିନିଟ ମଧ୍ୟରେ ସିରସ୍ତାଦାର, ତାଙ୍କର ପତ୍ନୀ କ୍ଷେତ୍ରମଣି ଓ କିଶୋରୀ ତିନି ଜଣ ଯାଇ ମୋଟରରେ ବସିଲେ । ସଙ୍ଗେ ସଙ୍ଗେ ମୋଟର ଘର୍ ଘର୍ ଶବ୍ଦ କରି କେଉଁଆଡ଼େ ଅଦୃଶ୍ୟ ହୋଇଗଲା ।

ବ୍ରଜକିଶୋର ସାଇକେଲରେ ଚଢ଼ି ପୋଲିଶ ସାହେବଙ୍କ କୋଠିକୁ ଦୌଡ଼ିଲେ । ସେପର୍ଯ୍ୟନ୍ତ ପୋଲିଶ ସାହେବ ଜାଗ୍ରତ ଥିଲେ । ବ୍ରଜକିଶୋର ପହଞ୍ଚିବା ମାତ୍ରକେ ସେ ମାଜିଷ୍ଟ୍ରେଟ ସାହେବଙ୍କ କୋଠିକୁ ଗଲେ । ମାଜିଷ୍ଟ୍ରେଟ ସାହେବ ମଧ୍ୟ ଜାଗ୍ରତ । ସେ ଏମାନଙ୍କର ଅପେକ୍ଷା କରୁଥିଲେ । ମୋଟରେ ପହଞ୍ଚିଲାକ୍ଷଣି ମାଜିଷ୍ଟ୍ରେଟ ସାହେବ ଦରଜା ଖୋଲି ଆଗ ସିଟରେ ବସିଗଲେ । ପୋଲିଶ ସାହେବଙ୍କ ଡ୍ରାଇଭର କାଠଯୋଡ଼ୀ ଅଭିମୁଖରେ ତୀବ୍ର ବେଗରେ ଗାଡ଼ି ଛୁଟାଇଦେଲା ।

କାଠଯୋଡ଼ୀ ପାର ହୋଇ ଅଳ୍ପ ଦୂର ଯାଇଛନ୍ତି, ସିରସ୍ତାଦାର ଫେରିବାର ବ୍ରଜକିଶୋର ଦେଖିପାରିଲେ । ମାଜିଷ୍ଟ୍ରେଟ ସାହେବଙ୍କୁ ଲକ୍ଷ୍ୟ କରି କହିଲେ "ଏହି ମୋଟରରେ ସିରସ୍ତାଦାର ଯାଇଥିଲେ—ବର୍ତ୍ତମାନ ଫେରୁଛନ୍ତି ।" ମାଜିଷ୍ଟ୍ରେଟ ସାହେବ ସେହିଠାରେ ସେ ମୋଟର ଅଟକାଇ ଦେଲେ । ଦେଖିଲେ—ସିରସ୍ତାଦାର, ତାଙ୍କର ପତ୍ନୀ ଓ ଡ୍ରାଇଭର ଭିନ୍ନ ଆଉ କେହି ସେ ମୋଟରରେ ନାହାନ୍ତି । ସିରସ୍ତାଦାରଙ୍କୁ ପଚାରିଲେ, "ଆପଣ କୁଆଡ଼େ ଯାଇଥିଲେ ?" ସିରସ୍ତାଦାର ମାଜିଷ୍ଟ୍ରେଟ ସାହେବଙ୍କ ଓ ପୋଲିଶ ସାହେବଙ୍କୁ ଯଥାବିଧି ସମ୍ମାନ ଦେଖାଇ କହିଲେ, "ଆଜ୍ଞା, ଏଣେ ଟିକିଏ ଆସିଥିଲି···" ଆଉ ତେଣିକି କଥା ପଇଟିଲା ନାହିଁ । ସେ ଅଠମଠ ହୋଇଗଲେ । ମାଜିଷ୍ଟ୍ରେଟ ସାହେବ କହିଲେ—

"ଅଚ୍ଛା, ଅଉ ଟିକିଏ ବୁଲି ଆସିଲେ କଣ ଅପତ୍ତି ଅଛି ? ଆପଣଙ୍କ ମୋଟର ଘରକୁ ଯାଉ, ଆପଣ ଆମ କାରରେ ଉଠି ଆସନ୍ତୁ ।" ସିରସ୍ତାଦାର ବିନା ବାକ୍ୟବ୍ୟୟରେ ମାଜିଷ୍ଟ୍ରେଟଙ୍କ କାରରେ ଉଠିଲେ ।

ଚୂଡଙ୍ଗ ହ୍ରଦ ପ୍ରାୟ ଏକ ମାଇଲ ଅଛି, ମୋଟର ବନ୍ଦ କରି ମାଜିଷ୍ଟ୍ରେଟ ସାହେବ ଓହ୍ଲାଇ ପଡିଲେ । ସଙ୍ଗେ ସଙ୍ଗେ ରାଜକିଶୋର ଓ ସିରସ୍ତାଦାର ମଧ୍ୟ ଓହ୍ଲାଇ ପଡ଼ିଲେ । ମାଜିଷ୍ଟ୍ରେଟ୍ ସାହେବ କହିଲେ, "ସିରସ୍ତାଦାର ବାବୁ, ଅପଣଙ୍କୁ ଗୋଟାଏ ସର୍ତ୍ତ ମାନିବାକୁ ହେବ । ପୁଣି ଅସି ମଟରରେ ବସିବାଯାଏ ଅପଣଙ୍କ ଉପରେ ୧୪୪ ଧାରା ଜାରି କରିଗଲି । ଯା ମଧ୍ୟରେ ଅପଣ ଅଦୌ ପାଟି ଖୋଲି ପାରିବେ ନାହିଁ ।" ତା ପରେ ସମସ୍ତେ ପଶ୍ଚିମ ଅଭିମୁଖରେ ଚାଲିବାକୁ ଲାଗିଲେ ।

ଚୂଡଙ୍ଗ ହ୍ରଦ ପାର ହୋଇଗଲେ ଅଳ୍ପ ଦୂରରେ ନିବିଡ ଜଙ୍ଗଲ । ଅନ୍ଧକାର ରାତିରେ ସମସ୍ତେ ସେହି ନିବିଡ଼ ଜଙ୍ଗଲମଧ୍ୟରେ ପ୍ରବେଶ କଲେ । ତାହାର ଚତୁର୍ଦ୍ଦିଗରେ ଟୁଂ ଶବ୍ଦଟିଏ ସୁଦ୍ଧା ନାହିଁ । ଏକ ଘଣ୍ଟା କାଳ ଜଙ୍ଗଲମଧ୍ୟରେ ବୁଲି ବୁଲି ଥକିଗଲେଣି ସମସ୍ତେ । ମାଜିଷ୍ଟ୍ରେଟ ସାହେବ ବଡ଼ ବିରକ୍ତ ହୋଇ ତିକ୍ତ ଅଥଚ ମୃଦୁ ସ୍ୱରରେ ପୋଲିସ ସାହେବଙ୍କୁ ଲକ୍ଷ୍ୟ କରି କହିଲେ, "କି ବନ୍ଦୋବସ୍ତ କରିଛନ୍ତି ଅପଣ ? ସବଇନ୍‌ସ୍‌ପେକ୍ଟର ଦୁଇ ଜଣ ପଠାଇଛନ୍ତି ତ ?" ପୋଲିସ ସାହେବ ସେତେବେଳେ କମ୍ ବିରକ୍ତି ବୋଧ କରୁ ନ ଥିଲେ । ସେ କ୍ରୋଧକମ୍ପିତ କ୍ଷୀଣ ସ୍ୱରରେ କହିଲେ, "ବନ୍ଦୋବସ୍ତ କରିବାରେ ମୁଁ ତ୍ରୁଟି କରି ନାହିଁ । କିନ୍ତୁ ସେମାନେ ଯେ କଣ କଲେ ........।" ମାଜିଷ୍ଟ୍ରେଟ୍ ସାହେବ ବାଧା ଦେଇ କହିଲେ "ଚୁପ୍ କର, କିଏ ଜଣେ ଏହି ଦିଗକୁ ଆସିଲାପରି ବୋଧ ହେଉଛି ।" ସମସ୍ତେ ନୀରବରେ ନିରୀକ୍ଷଣ କରିବାକୁ ଲାଗିଲେ । ପ୍ରାୟ ପାଞ୍ଚ ମିନିଟ ପରେ ସବଇନ୍ସପେକ୍ଟର ମାଧବ ବାବୁ ସେମାନଙ୍କର ନିକଟବର୍ତ୍ତୀ ହୋଇ କହିଲେ, "ହଜୁର, ଚୂଡଙ୍ଗ ହ୍ରଦ ପାଖରେ ଅପେକ୍ଷା ନ କରି ଏତେ

ଦୂର କାହିଁକି ଅସିଲେ ? ଅମ୍ଭେମାନେ ଖୋଜି ଖୋଜି ଥକିଗଲୁଣି ।
ବିଳମ୍ବ ହେଲେ ବୋଧହୁଏ ସବୁ ବନ୍ଦୋବସ୍ତ ପଣ୍ଡ ହୋଇଯିବ—ଶୀଘ୍ର
ଅସନ୍ତୁ ।'' ମାଜିଷ୍ଟ୍ରେଟ ସାହେବ ତମ୍ପା ପୋଲିଶ ସାହେବଙ୍କର ଆଦେଶକୁ
ଅପେକ୍ଷା ନ କରି ସେ ଚାଲିବାକୁ ଲାଗିଲେ । ଆଉ କୌଣସି ପ୍ରଶ୍ନ
ଉତ୍ଥାପନ ନ କରି ମୃଦୁ ପଦକ୍ଷେପରେ ସମସ୍ତେ ତାଙ୍କର ଅନୁସରଣ
କଲେ ।

ଘନ ବନମଧ୍ୟରେ ବହୁ ପଥ ଅତିକ୍ରମ କରି ଅର୍ଦ୍ଧଘଣ୍ଟା ପରେ
ଗୋଟାଏ ବଡ଼ ବୃକ୍ଷମୂଳରେ ସମସ୍ତଙ୍କୁ ଠିଆ ହେବାକୁ କହି ମାଧବ
ବାବୁ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ ।

ଚତୁଃପାର୍ଶ୍ୱରେ ନୀରନ୍ଧ୍ର ଅରଣ୍ୟାନୀ, ମଧ୍ୟରେ ପ୍ରାୟ କୋଡ଼ିଏ
ହାତ ଦୀର୍ଘ ଓ ପନ୍ଦର ହାତ ପ୍ରସ୍ଥବିଶିଷ୍ଟ ଗୁଳ୍ମଲତାପରିଶୂନ୍ୟ ଟାଙ୍ଗର
ଭୂମି ଖଣ୍ଡେ । ସେହି ଟାଙ୍ଗର ଭୂମିର ମଧ୍ୟ ଭାଗରେ କ୍ଷୁଦ୍ର ବେଦିକା-
ଟିଏ ବେଶ୍ ପରିପାଟୀରେ ସୁସଜ୍ଜିତ । ଦସ୍ୟୁପତି ବିହାରୀ ସେହି
ବେଦିକାରେ ବରବେଶରେ ଉପବିଷ୍ଟ, ତାର ଦକ୍ଷିଣ ପାର୍ଶ୍ୱରେ
କିଶୋରୀ ଉପବିଷ୍ଟା । ବିବାହ ସାମଗ୍ରୀ ସମସ୍ତ ନିକଟରେ ରଖି
ଜନାର୍ଦ୍ଦନ ପଢ଼ିଆରି ପୁରୋଧା ହୋଇ ମନ୍ତ୍ରପାଠ କରୁଛି । ଅଉ ପ୍ରାୟ
ପନ୍ଦର କୋଡ଼ିଏ ଜଣ ଲୋକ ବେଦିକାର ଚାରିପାଖରେ ବସିଛନ୍ତି ।
ଚାରି କୋଣରେ ଚାରୋଟା ପେଟ୍ରୋମାକ୍ସ ଅଲୁଅ ଜଳୁଛି । ମାଜିଷ୍ଟ୍ରେଟ
ସାହେବ ଓ ପୋଲିସ ସାହେବ ପ୍ରଭୃତି ଯେଉଁ ସ୍ଥାନରେ ଠିଆ
ହୋଇଥିଲେ, ସେଠାରୁ ବେଦିକାର ଦୂରତ୍ୱ ପ୍ରାୟ ପଚିଶ ହାତ ହେବ ।
ବୃକ୍ଷାନ୍ତରାଳରୁ ସେମାନେ ପରିଷ୍କାର ବିବାହ ଦୃଶ୍ୟ ଦେଖିପାରିଲେ ।
ବିହାରୀକୁ ବରବେଶରେ ଦେଖି ମାଜିଷ୍ଟ୍ରେଟ ସାହେବଙ୍କ ଚକ୍ଷୁ ସ୍ଥିର
ହୋଇଗଲା । ଗୁରୁ ଦନ ହେଲା ବିହାରୀ ପୁରୀ ଜେଲରୁ ପଳାୟନ

କରିଥିବା କଥା ତାଙ୍କୁ ଅଗୋଚର ନ ଥିଲା । ସେ ବହାଗ୍ରିଙ୍କୁ ଉତ୍ତମ-ରୂପେ ଚିହ୍ନନ୍ତି । ଦୁଇ ତିନି ଥର ତାର ମକଦ୍ଦମା ନିଜେ ବିଚାର କରିଛନ୍ତି ମଧ୍ୟ । ସେହି ବହାଗ୍ରି—ଗୋଟାଏ ସାମାନ୍ୟ ଲୋକ । ତାର ପୁଣି କି ଅଦ୍ଭୁତ ସାହସ ! କି ବିଚକ୍ଷଣ ବୁଦ୍ଧି ! ସେ ମନେ ମନେ ବହାଗ୍ରିଙ୍କୁ ପ୍ରଶଂସା ନ କରି ରହିପାରିଲେ ନାହିଁ । ରାଜକିଶୋର କିନ୍ତୁ ସେତେବେଳେ ଅନ୍ୟପ୍ରକାର ଭାବୁଥିଲେ । ତାଙ୍କର ଇଚ୍ଛା ହେଉଥିଲା, ସେ ସିରସ୍ତାଦାରଙ୍କୁ ସେଠାକୁ ନେଇଯାଇ ବହାଗ୍ରିର ଉତ୍ତରୀୟ ବସ୍ତ୍ରରେ ଉଭୟଙ୍କୁ ବାନ୍ଧି ସେହି ହୋମ ଅଗ୍ନିରେ ଫିଙ୍ଗି ଦିଅନ୍ତେ । କିନ୍ତୁ ଉଦ୍ଦେଶ୍ୟ ବିଫଳ ହେବା ଶଙ୍କାରେ ଜୋର୍ କରି ହୃଦୟର ସେ ଭାବକୁ ଦମନ କଲେ ।

ମାଜିଷ୍ଟ୍ରେଟ୍ ସାହେବ ଏବଂ ପୁଲିଶ ସାହେବ ଉଭୟେ ଭାବୁଛନ୍ତି କଣ କରିବେ ? ତାଙ୍କର ଆଦେଶପତେ ସମସ୍ତେ ପ୍ରସ୍ତୁତ ଅଛନ୍ତି କି ନା । ଯଦି ନ ଥାନ୍ତି ବହାଗ୍ରି ପରି ଦୁର୍ଦ୍ଦାନ୍ତ ଦସ୍ୟୁଙ୍କୁ କରାୟତ୍ତ କରିବା ତ ସହଜସାଧ୍ୟ ନୁହେଁ । ସେହି ସମୟରେ ମାଧବ ବାବୁ ଆସି କହିଲେ "ସମସ୍ତେ ପ୍ରସ୍ତୁତ—ଶୀଘ୍ର ଆଦେଶ କରନ୍ତୁ" । ମାଜି-ଷ୍ଟ୍ରେଟ ପୁଲିଶ ସାହେବଙ୍କୁ ଚାହିଁଲେ । ପୁଲିଶ ସାହେବ ସଙ୍ଗେ ସଙ୍ଗେ ବଂଶୀ ବାଦନ କଲେ । ବେଦିକା ଚାରିପାଖରେ ବସିଥିବା ଦସ୍ୟୁମାନେ ଚମକି ଉଠିଲେ ସେ ଶବ୍ଦରେ । ସମସ୍ତେ ନିଜ ନିଜର ଅସ୍ତ୍ର ଧରିବା-ବାକୁ ଲାଗିଲେ ; କିନ୍ତୁ ଅବସର ପାଇଲେ ନାହିଁ । ପଲକମାନେ ଆର୍ମ ପୁଲିଶ ଫୌଜ ଚାରିପାଖରୁ ଆସି ଘେରିଗଲେ ଏବଂ ଜଣ ଜଣ କରି ବନ୍ଦୀ କରିପକାଇଲେ । ବହାଗ୍ରି ବିବାହ ବେଦୀରେ ସୁଦ୍ଧା ଅସ୍ତ୍ର ଛାଡ଼ି ନ ଥିଲା । ସେ ସେହିପରି ବର ପୋଷାକରେ ତରବାରୀ ଧରି ଠିଆ ହୋଇଗଲା । ତାକୁ ବନ୍ଦୀ କରିବାକୁ ଯାଉଥିବା ଦୁଇ ଜଣ

ସିପାହୀଙ୍କୁ ତାହାଙ୍କ ଆକ୍ରମଣ କରିବାକୁ ଉଦ୍ୟତ ହେବା ସମୟରେ ପଛ ପାଖରୁ ଜଣେ କନେଷ୍ଟବଲ୍ ଆସି ତାକୁ ଆୟତ୍ତ କରିନେଲା। ପ୍ରାୟ ପାଞ୍ଚ ମିନିଟ ମଧ୍ୟରେ ସମସ୍ତେ ଶୃଙ୍ଖଳାବଦ୍ଧ ହୋଇଗଲେ।

ମାଜିଷ୍ଟ୍ରେଟ ସାହେବଙ୍କ ହୁକୁମ ପାଇ ପୁଲିଶ ଫୌଜ ଯଥା-ନିୟମରେ ବନ୍ଦୀମାନଙ୍କୁ ଘେନି କଟକ ନଗରୀ ଅଭିମୁଖରେ ଗଲେ। କଣୋରୀ ମଟରରେ ଯିବାର ସ୍ଥିର ହେଲା।

ମଟରରେ ବସିବା ସମୟରେ ମାଜିଷ୍ଟ୍ରେଟ ସାହେବ ସିରସ୍ତା-ଦାରଙ୍କୁ ଲକ୍ଷ୍ୟ କରି କହିଲେ, "ଏ କନ୍ୟାଟି ଆପଣଙ୍କର ଘରର ଥିଲା ବୋଧ ହୁଏ।" ସିରସ୍ତାଦାରଙ୍କ ଶରୀର ସେତେବେଳକୁ ରକ୍ତଶୂନ୍ୟ ହୋଇଯାଇଥିଲା। କୌଣସି ପ୍ରଶ୍ନର ଉତ୍ତର ଦେବାଭଳି ଶକ୍ତି ତାଙ୍କର ନ ଥିଲା। ସେ ମାଜିଷ୍ଟ୍ରେଟଙ୍କ ପ୍ରଶ୍ନର ଉତ୍ତର ଦେଇପାରିଲେ ନାହିଁ। ତାଙ୍କୁ ନିରୁତ୍ତର ଦେଖି ମାଜିଷ୍ଟ୍ରେଟ ସାହେବ କହିଲେ, "ଚୁପ୍ ରହିଲେ ଯେ ! ଦୁଇ ଘଣ୍ଟା ପୂର୍ବେ ଆପଣ ଯେତେବେଳେ ମୋଟରରେ ବୁଲି ଆସିଥିଲେ, ଏ ସ୍ତ୍ରୀଟିକୁ ସଙ୍ଗରେ ଆଣିଥିଲେ ନା ?" ସିରସ୍ତାଦାର ନିରୁତ୍ତର। ମାଜିଷ୍ଟ୍ରେଟ ସାହେବ ପୁଣି ପଚାରିଲେ, "ଉତ୍ତର ନ ଦେବାଟା ନିତାନ୍ତ ଅଭଦ୍ରୋଚିତ, ଆପଣ ଜାଣନ୍ତି ? କହନ୍ତୁ—ଏ ସ୍ତ୍ରୀଲୋକଟିକୁ ଆପଣ ଚିହ୍ନନ୍ତି ?" ସିରସ୍ତାଦାର କମ୍ପିତ କଣ୍ଠରେ କହିଲେ, "ଆଜ୍ଞା, ହଁ।"

"ବେଟ୍, ସେତିକି ଯଥେଷ୍ଟ।" ତାପରେ ମାଜିଷ୍ଟ୍ରେଟ ସାହେବ ଜଣେ କନେଷ୍ଟବଲକୁ ଲକ୍ଷ୍ୟ କରି କହିଲେ, "ଲଗାଅ ହାତକଡି।" ସିରସ୍ତାଦାର ସଙ୍ଗେ ସଙ୍ଗେ ଶୃଙ୍ଖଳାବଦ୍ଧ ହୋଇ ଦସ୍ୟୁ ଦଳର ସଂଖ୍ୟାବୃଦ୍ଧି କଲେ।



## —ଊନବିଂଶ ପରିଚ୍ଛେଦ—

କିଶୋରୀ ମିଳିଥିବାର ସଂବାଦ ପାଇ ଜଗନ୍ନାଥ ମଙ୍ଗରାଜ କଟକ ଆସିଲେ । କିଶୋରୀ ସହିତ ଦେଖାହେବା ପୂର୍ବରୁ ରାଜକିଶୋରଙ୍କ ସହିତ ଦେଖା ହେଲା । ରାଜକିଶୋରଙ୍କୁ ଦେଖିଲାକ୍ଷଣି ତାଙ୍କ ଅନ୍ତରରେ ବହୁଦିନର ସଂଚିତ ଅବ୍ୟକ୍ତ ବେଦନାରାଶି ଉଦ୍ବେଳ ହୋଇ ଲୋତକ-ରୂପେ ପ୍ରବାହିତ ହେବାକୁ ଲାଗିଲା । ସେ ରାଜକିଶୋରଙ୍କୁ କୁଣ୍ଢାଇ ପକାଇ ତପ୍ତ ଅଶ୍ରୁ ପ୍ରବାହରେ ତାଙ୍କର ମସ୍ତକ ସିକ୍ତ କରୁ କରୁ କହିଲେ, "ବାପ, ମୁଁ ବୃଦ୍ଧ ହେଲେହେଁ ତୁ ମୋର ଗୁରୁ । ମୁଁ ନରାଧମ ତୋପ୍ରତି ବଡ଼ ଅନ୍ୟାୟ, ଅତି ଅମାନୁ-ଷିକ ବ୍ୟବହାର କରିଛି । କିନ୍ତୁ ତୁ ସେ ସମସ୍ତ ଅତ୍ୟାଚାର ବିସ୍ମୃତ ହୋଇ ବୃଦ୍ଧର ଜୀବନରକ୍ଷା ଲାଗି ଯାହା କରିଛୁ ମୁଁ ଶତଜନ୍ମରେ ସୁଦ୍ଧା ତୋର ସେ ଋଣ ପରିଶୋଧ କରିପାରିବି ନାହିଁ ।" ଶୋକା-ବେଗ ହେତୁ ବୃଦ୍ଧ ଆଉ କହିପାରିଲେ ନାହିଁ । ରାଜକିଶୋର ମଧ୍ୟ ବାକ୍‌ଶକ୍ତିରହିତ ହୋଇଥିଲେ ସେତେବେଳେ । ଉଭୟେ ଉଭୟଙ୍କର ମନୋଗତ ଭାବ ସଜଳ ନେତ୍ରର ଭୂଷିତ ଗୃହାଣୀରେ ବ୍ୟକ୍ତ କଲେ କେବଳ । ଏହି ସମୟରେ କିଶୋରୀ ଦୂରରୁ ପିତାଙ୍କୁ ଚିହ୍ନି ପାରି 'ବାବା' ବୋଲି କହି ଦୌଡ଼ି ଆସିଲା । ବହୁଦିନ ପରେ 'ବାବା' ଶବ୍ଦ ଶୁଣି ପୁଲକରେ ମଙ୍ଗରାଜଙ୍କର ଶରୀର ରୋମାଞ୍ଚିତ ହୋଇ ଉଠିଲା । ସେ "ମା ମୋର" କହି ରାଜକିଶୋରଙ୍କୁ ଛାଡ଼ି ଦୌଡ଼ିଗଲେ । ପିତା ପୁତ୍ରୀ ଉଭୟେ ଆଲିଙ୍ଗନ-ପାଶରେ ଆବଦ୍ଧ ହୋଇ କେତେ କ୍ଷଣ ନିର୍ବାକ୍ ନିସ୍ପନ୍ଦ ଭାବରେ ରହିଗଲା ପରେ କିଶୋରୀ ଧୀରେ ତାର ନତ ମସ୍ତକ ଉତ୍ତୋଳନ କରି କହିଲା—"ବାବା !" ମଙ୍ଗରାଜେ ଉତ୍ତର ଦେଇପାରିଲେ ନାହିଁ । ତାଙ୍କର ଆଖିକଣରୁ ଦୁଇ ଧାର ଉଷ୍ମ

ଲେଖକ କିଶୋରୀର ଅର୍ଦ୍ଧାବୃତ ମସ୍ତକ ଉପରେ ଗଡ଼ି ପଡ଼ିଲା । ରାଜକିଶୋର ମଙ୍ଗରାଜଙ୍କୁ ଲକ୍ଷ୍ୟ କରି କହିଲେ,"ବାବା, ଅପନ୍ତୁ ଏ ଘରକୁ ।" ମଙ୍ଗରାଜ ମନ୍ତ୍ରମୁଗ୍ଧ ବତ୍ କନ୍ୟା ସହିତ ରାଜକିଶୋରଙ୍କର ଅନୁସରଣ କଲେ ।

× × × ×

ମୋକଦ୍ଦମାର ବିଚାର ଆରମ୍ଭ ହେଲା । ବହାଗିରି, ସିରସ୍ତାଦାର ପ୍ରଭୃତି ବନ୍ଦୀମାନେ କୋର୍ଟକୁ ଆସିଲେ । କିଶୋରୀ ମଧ୍ୟ ଆସିଲା । ପ୍ରଥମେ କିଶୋରୀର ଜମାନବନ୍ଦୀ ନିଆଗଲା । କିଶୋରୀ ଯେପରି ଭାବରେ ସାବୀର ଛଳନାରେ ଯାଇଥିଲା, ସଦାନନ୍ଦ ତାଙ୍କର ପୂର୍ବ ସହିତ ତାର ଗୁପ୍ତ ବିବାହ ଘଟାଇବା ପାଇଁ ଛଅ ଦିନ କାଳ ତାକୁ ଅଟକାଇ ରଖି ଯେପରି ଭୁଲାଇବାର ଚେଷ୍ଟା କରିଥିଲେ, ତା ପରେ ସେ ରାଜି ନ ହେବାରୁ ତାକୁ ତାର ଘରେ ଛାଡ଼ିଦେବେ ବୋଲି କହି ଯେପରି ଭାବରେ ଧର୍ମଶାଳା ପର୍ଯ୍ୟନ୍ତ ନେଇ ଯାଇଥିଲେ, ସେଠାରୁ ସେ କୌଶଳରେ ଖସିଯାଇ ଯେପରି ଦୟାନିଧି ବାବୁଙ୍କର ଆଶ୍ରୟ ଗ୍ରହଣ କଲା ଏବଂ ଦୟାନିଧି ବାବୁ ତାର ପିତା ମରି ଯାଇଥିବାର ମିଥ୍ୟା ସମ୍ବାଦ ଦେଇ ବର୍ତ୍ତମାନ ନିଜର ଘରେ ବନ୍ଦୀ କରି ଶେଷରେ ଯେପରି ଭାବରେ ବହାଗିରି ସହିତ ବିବାହର ବନ୍ଦୋବସ୍ତ କଲେ, ସମସ୍ତ କଥା କିଶୋରୀ ଗୋଟି ଗୋଟି କରି କହିଗଲା । ସିରସ୍ତାଦାର ଗୁପ୍ତ ଭାବରେ ବହାଗିରି ସହିତ କିଶୋରୀର ବିବାହ ଦେଇଥିଲେ ସତ; ସେ କିନ୍ତୁ ତାକୁ ଗୃହତ୍ୟାଗ କରାଇ ନାହାନ୍ତି । ତାକୁ ଘରୁ ବାହାର କରି ଆଣିଅଛି ସାବୀ, ସଦାନନ୍ଦଙ୍କର ପରାମର୍ଶରେ । ସାବୀ ଓ ସଦାନନ୍ଦ ପ୍ରଥମ ଆସାମୀ । ମାଜିଷ୍ଟ୍ରେଟ ସେ ଦିନ ସିରସ୍ତାଦାର ଓ ବହାଗିରିଠାରୁ ଫେଡେରିକ ଜମାନବନ୍ଦୀ ନେଲେ; କିନ୍ତୁ ବିଚାର ଶେଷ ହେଲା ନାହିଁ । ଆଉ ଗୋଟିଏ ତାରିଖ ହେଲା । ସାବୀ ଓ ସଦାନନ୍ଦଙ୍କ ନାମରେ ଗ୍ରେଫତାରୀ

ବାହାର କରି ସେହି ଗାରଖରେ ତାଙ୍କୁ କୋର୍ଟରେ ହାଜର କରିବା ପାଇଁ ମାଜିଷ୍ଟ୍ରେଟ ସାହେବ ଏସ୍. ଡ. ଓ.ଙ୍କୁ ଅର୍ଡର ଦେଲେ ।

ସେ ଦିନ ଧନେଶ୍ୱର ଧାନମଣ୍ଡଳ ଷ୍ଟେସନରେ ପହଞ୍ଚି କଲିକତାକୁ ଦୁଇଖଣ୍ଡି ଟିକେଟ କିଣିଲେ । କିନ୍ତୁ ସବାଗ୍ନି ଦ୍ୱାର ଖୋଲି ଦେଖିଲା ବେଳକୁ କିଶୋରୀ ନାହିଁ । ତା ପରିବର୍ତ୍ତିରେ କେତେ ଖଣ୍ଡ ପ୍ରସ୍ତର ସବାଗ୍ନି ମଧ୍ୟରେ ଥୁଆ ହୋଇଅଛି । ଧନେଶ୍ୱରଙ୍କର ମୁଣ୍ଡ ଘୂରିଇଦେଲା । ସେ ଥକ୍କାମାରି ଦଣ୍ଡେ କାଳ ବସିଗଲେ । କଣ କରିବେ ? କାହାକୁ ବା କହିବେ ? ଖୋଜ ଖବର କଲେ ତ ବେହେରାମାନେ ଜାଣି-ପାରିବେ । କଥା କ୍ରମେ ଜଗନ୍ନାଥ ମଙ୍ଗରାଜ ସ୍ୱାମୀ ତାଙ୍କର କୌଣସି ସପକ୍ଷ ଲୋକ କାନକୁ ଯାଇପାରେ । ବିଷମ ସଙ୍କଟରେ ପଡିଲେ ଧନେଶ୍ୱର ।

ସମ୍ପଦବେଳେ ସମସ୍ତେ ସିନା ଆପଣାର, ବିପଦବେଳେ କିଏ କାହାର ? ଧନେଶ୍ୱର ଭାବିଲେ—କିଶୋରୀ ଯେଉଁଠାରେ ବା ଯାହାର ଆଶ୍ରୟରେ ଥିବ, ତା ପାଖରେ ସେ ପ୍ରକୃତ ଘଟଣା ସବୁ କହିଥିବ ନିଶ୍ଚୟ । ଧନେଶ୍ୱର ଯଦି ଅନୁସନ୍ଧାନ କରୁଛନ୍ତି, ସଦାନନ୍ଦଙ୍କ ସହିତ ସେ ମଧ୍ୟ ବିପଦରେ ପଡିବେ । କିଶୋରୀ ତ ଧନେଶ୍ୱରଙ୍କୁ ଚିହ୍ନେ ନାହିଁ । ସେ ଜାଣେ ସଦାନନ୍ଦ ତାକୁ କୌଶଳରେ ନେଇ ଆସିଛନ୍ତି । ଉଥାଟା ପ୍ରକାଶ ପାଇଲେ ସଦାନନ୍ଦ ସିନା ବିପଦରେ ପଡିବେ । ଧନେଶ୍ୱରଙ୍କର କି ଦରକାର, କିଶୋରୀର ଅନ୍ୱେଷଣ କରିବାକୁ ଯାଇ ବିପଦକୁ ବରଣ କରିବେ ? ଉପସ୍ଥିତ କ୍ଷେତ୍ରରେ ନୀରବ ରହିବାର ସ୍ଥିରକରି ଧନେଶ୍ୱର ଗୃହକୁ ଫେରିଗଲେ ।

ଉକ୍ତ ଘଟଣାର ପ୍ରାୟ ପନ୍ଦର ଦିନ ପରେ ସଦାନନ୍ଦ ଖବର ପାଇଲେ, କିଶୋରୀ କଲିକତା ଯାଇ ନାହିଁ—ବାଟରୁ ପଳାୟନ କରିଛି ।

ଉପରେ ତାଙ୍କର ଗୋଡଠାରୁ ମୁଣ୍ଡଯାଏ ଥରିବାକୁ ଲାଗିଲା । ଜଗନ୍ନାଥ ମଙ୍ଗରାଜ ଘଟଣାଟା ଜାଣିପାରିଲେ କି ଦୁର୍ଦ୍ଦଶା ନ ଘଟାଇବ ତାଙ୍କର ! କିନ୍ତୁ କଣ କରିବେ ? ନେଞ୍ଜ ଗୁଡ଼ ଜନ୍ତୁଣିକ ବନ୍ଧୁଗଲେ ଅଉ କି ଗୁଟିବାକୁ ଉପାୟ ଥାଏ ? ସଦାନନ୍ଦ ଗୁପ୍ତଚରଙ୍କ ଦ୍ୱାରା କିଶୋରୀର ଅନୁସନ୍ଧାନ କରିବାକୁ ଲାଗିଲେ । ମାସେ ଗଲା, ଦୁଇ ମାସ ଗଲା, କ୍ରମେ ଗୁରି ଛ ମାସ ବିତିଲା । ତଥାପି କିଶୋରୀର ସନ୍ଧାନ ନାହିଁ । ଜଗନ୍ନାଥ ମଙ୍ଗରାଜ ପ୍ରକାଶ୍ୟରେ ବହୁ ଅନୁସନ୍ଧାନ କରି ସୁଦ୍ଧା ଯେତେବେଳେ ତାର କୌଣସି ଖବର ପାଇଲେ ନାହିଁ , ସଦାନନ୍ଦ ଟିକିଏ ଅଶ୍ୱସ୍ତ ବୋଧ କଲେ । ହେଲେ ସମ୍ପୂର୍ଣ୍ଣ ନିଶ୍ଚିନ୍ତ ହୋଇପାରିଲେ ନାହିଁ । ପାପ ଶରଧନ ତ ଲୁଚିବ ନାହିଁ । ଯେଉଁ ଦିନ ହେଲେ କିଶୋରୀ ଫେରିଆସିଲେ ସଦାନନ୍ଦଙ୍କର ଅବସ୍ଥା କି ଶୋଚନୀୟ ନ ହେବ ?

"ଭଗବାନଙ୍କ କୃପାରୁ କିଶୋରୀ ମରିଯାଇଥିବ କି !"

କିଶୋରୀ ମିଳିଥିବାର ସମ୍ବାଦ ପାଇ ଜଗନ୍ନାଥ ମଙ୍ଗରାଜ ଯେତେବେଳେ କଟକ ଆସିଲେ, ସଦାନନ୍ଦଙ୍କର କଲିଜା କମ୍ପିତ ହେବାକୁ ଲଗିଲା । କିପରି ବିପଦରୁ ଉଦ୍ଧାର ହେବେ, ସେହି ଉପାୟ ଚିନ୍ତା କରିବାକୁ ଲାଗିଲେ । ଏଣେ ସଙ୍ଗେ ସଙ୍ଗେ ମୋକଦ୍ଦମାର ବିଚାର ଆରମ୍ଭ ହୋଇଗଲା । ସାକ୍ଷୀ ଓ ସଦାନନ୍ଦ ଉପସ୍ଥିତ ନ ଥିବାରୁ ମୋକଦ୍ଦମା ତାରିଖ ହେଲା ଏବଂ ସେମାନଙ୍କୁ ଗିରଫ କରିବାକୁ ମାଜିଷ୍ଟ୍ରେଟ ସାହେବ ହୁକୁମ ଦେଇଛନ୍ତି, ଏ କଥା ସଦାନନ୍ଦଙ୍କ କାନରେ ପଡିବାକୁ ବିଳମ୍ବ ହେଲା ନାହିଁ । ତାଙ୍କ ହୃଦୟରେ ନାନା ପ୍ରକାର ଚିନ୍ତାସ୍ରୋତ ବହିବାକୁ ଲାଗିଲା । ପୁଅ ତାଙ୍କର ଆଇ. ସି. ଏସ୍. ଅଫିସର—ପୁନଃ ଅ ଜିଲ୍ଲାରେ ଏସ୍. ଡି. ଓ. । ନିକଟରେ ମାଜିଷ୍ଟ୍ରେଟ

ହୋଇ କଟକ ଆସିବାର ଶୁଣା ଯାଉଛି । ପୁଅ ଯେଉଁ ମିସଲରେ ହାକିମ, ବାପ ସେହି ମିସଲରେ ଆସାମୀ । ପୁଅ ଯେଉଁଠାରେ ନ୍ୟାୟପତି, ବାପ ସେହିଠାରେ ଅନ୍ୟାୟୀ, ଅତ୍ୟାଚାରୀ, ଦସ୍ୟୁ । ସଦାନନ୍ଦଙ୍କୁ ବଡ଼ କଷ୍ଟ ବୋଧ ହେଲା । ଏ ଅପମାନ ସହିବାଠାରୁ ମୃତ୍ୟୁ ବରଂ ଭଲ । ସଦାନନ୍ଦ ନିଜର ଅପରାଧ ବୁଝିପାରିଲେ । କିନ୍ତୁ ସେ ଅପରାଧର ଦଣ୍ଡ ବିଧାନ କୋର୍ଟ ନ କରୁ । ସେ ଆସାମୀ ଭାବରେ କୋର୍ଟରେ ଦଣ୍ଡାୟମାନ ହୋଇପାରିବେ ନାହିଁ—ଏହା ତାଙ୍କର ଦୃଢ଼ ପ୍ରତିଜ୍ଞା ।

ଏସ୍. ଡି. ଓ. ଙ୍କର ଅର୍ଡର ପାଇ ଦୁଇଜଣ ସବ୍‌ଇନ୍‌ସ୍ପେକ୍ଟର ଓ ଚାରି ଜଣ କନେଷ୍ଟବଲ୍ ଓ୍ୱାରେଣ୍ଟ ନେଇ ଚରଣ ପ୍ରଗନାରେ ଉପସ୍ଥିତ ହେଲେ ସାରୀ ଓ ସଦାନନ୍ଦଙ୍କୁ ଗିରଫ କରିବା ପାଇଁ । ସାରୀଙ୍କୁ ଗିରଫ କଲେ; କିନ୍ତୁ ସଦାନନ୍ଦ ନିରୁଦ୍ଦେଶ । ଗତ ରାତିରୁ ସେ କେଉଁଆଡ଼େ ଯାଇଛନ୍ତି, କେହି ଜାଣନ୍ତି ନାହିଁ । ପୋଲିସ ତାଙ୍କର ଯଥାବିଧି ଅନ୍ୱେଷଣ କରିବାକୁ ଲାଗି ପଡ଼ିଲେ ।

ପରେ ମାଜିଷ୍ଟ୍ରେଟ ସାହେବଙ୍କର ବଦଳି ହୋଇଗଲା । ସଦାନନ୍ଦଙ୍କର ପୁତ୍ର ଗୋକୁଳଚରଣ କାନୁନଗୋ କଟକ ଜିଲ୍ଲାର ମାଜିଷ୍ଟ୍ରେଟ ହୋଇ ଆସିଲେ । ସେ କଟକରେ ପହଞ୍ଚିଲାକ୍ଷଣି ପିତାଙ୍କ ନାମରେ ବାହାରିଥିବା ଓ୍ୱାରେଣ୍ଟ ପରୁଆନା ଦେଖିବା ସଙ୍ଗେ ସଙ୍ଗେ ପିତାଙ୍କର ନିରୁଦ୍ଦେଶ ଖବର ମଧ୍ୟ ଶୁଣି ପାରିଲେ । ପ୍ରକୃତ ଘଟଣା ବୁଝିବା ପାଇଁ ସେ ଘରୋଇ ଭାବରେ ରାଜକିଶୋରଙ୍କୁ ମୋକଦ୍ଦମା ବିଷୟ ପଚାରିଲେ । ରାଜକିଶୋର ନିଜେ କିଛି ନ କହି କିଶୋରୀ-ଦ୍ୱାରା ସମସ୍ତ କଥା ତାଙ୍କୁ ଶୁଣାଇଲେ । କିଶୋରୀଠାରୁ ଆମୂଳ ଘଟନା ଶ୍ରବଣ କରି ପିତାଙ୍କ ପ୍ରତି ଗୋକୁଳ ବାବୁଙ୍କର ଅନ୍ତର ଘୃଣାରେ

ଉଠିଗଲା । ସେ ମନେ ମନେ କହିଲେ, "ବାପା ମରିଯାଇଥାନ୍ତି ତ ମଙ୍ଗଳ । ତା ନ ହୋଇ ଯଦି ପୁଣି ଧରା ପଡ଼ନ୍ତି, ଆଜି ମୁଁ ତାଙ୍କର ମୋକଦ୍ଦମା ବିଚାର କରେ......ନା, ତା ପୂର୍ବରୁ ମୋର ମୃତ୍ୟୁ ହେବା ବାଞ୍ଛନୀୟ ।"

ମୋକଦ୍ଦମା ବିଚାରର ତାରିଖ ଉପସ୍ଥିତ ହେଲା । ସାକ୍ଷୀ, ସିଉସ୍ତା-ବାର ପ୍ରଭୃତି ବନ୍ଦୀମାନେ କୋର୍ଟରେ ହାଜର ହେଲେ; କିନ୍ତୁ ସଦାନନ୍ଦଙ୍କର ସେପର୍ଯ୍ୟନ୍ତ କୌଣସି ଖବର ମିଳି ନାହିଁ । ମାଜିଷ୍ଟ୍ରେଟ ସାହେବଙ୍କ ହୁକୁମ ଅନୁସାରେ ପ୍ରଥମେ ସାକ୍ଷୀର ଜବାନବନ୍ଦି ଆରମ୍ଭ ହେଲା । କିନ୍ତୁ ସାକ୍ଷୀ କୌଣସି କଥା କହିବା ପୂର୍ବରୁ ସଦାନନ୍ଦ ତୋଫାନ ପରି ଛୁଟି ଆସି ମିସିଲରେ ଠିଆ ହୋଇଗଲେ । ମାଜିଷ୍ଟ୍ରେଟ ସାହେବ ଗୋକୁଳବାବୁ ପିତାଙ୍କୁ ନିତାନ୍ତ ଅସ୍ୱାଭାବିକ ଭାବରେ ଉପସ୍ଥିତ ହେବାର ଦେଖି ଲଜ୍ଜାରେ, ଅପମାନରେ, କ୍ରୋଧରେ ମୁଣ୍ଡ ତଳକୁ ନୁଆଁଇଦେଲେ । ସଦାନନ୍ଦ ସେଥିପ୍ରତି ଲକ୍ଷ୍ୟ ନ କରି ପୁତ୍ରଙ୍କୁ ଉଦ୍ଦେଶ୍ୟ କରି କହିଲେ, "ମୁଁ ସ୍ଥିର କରିଥିଲି ଏ ଜନ୍ମରେ କୋର୍ଟକୁ ଆସି ନ ଥାନ୍ତି; କିନ୍ତୁ ନ ଆସି ରହିପାରିଲି ନାହିଁ । ତୁ ଆଜି ଜିଲ୍ଲାର ମାଜିଷ୍ଟ୍ରେଟ—ନ୍ୟାୟପତି—ଧର୍ମାବତାର, ତୋତେ ଧର୍ମାବତାର ଆସନରେ ଦେଖି ପିତୃ ଜନ୍ମର ସାର୍ଥକତା ଉପଲବ୍ଧି କରିବାକୁ ଆସିଲି । ତୋ ପରି ଯୋଗ୍ୟ ପୁତ୍ର ପାଇ ମୁଁ ଆଜି ବଡ଼ ଭାଗ୍ୟବାନ୍ । କିନ୍ତୁ ମୋ ପରି ପାଷଣ୍ଡ ପିତା......।" ତାଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । ଟିକିଏ ରହି ପୁଣି କହିଲେ,"ମୁଁ ପାଷଣ୍ଡ, ନରାଧମ, ବଡ ଅନ୍ୟାୟ କରିଛି । କିନ୍ତୁ ପିତାର ନ୍ୟାୟାନ୍ୟାୟ ବିଚାର କରିବାକୁ ପୁତ୍ର ନ୍ୟାୟତଃ, ଏହାଠାରୁ ବଳି ଅପମାନ ଆଉ କଣ ଅଛି ? ସେଥିପାଇଁ ସେ ଅନ୍ୟାୟର ବିଚାର ମୁଁ ନିଜେ କରିପାରିଛି ।

ଭଗବାନ ମୋତେ ସେ ବୁଦ୍ଧି ଦେଇ ବଡ଼ ଅନୁଗ୍ରହ ଦେଖାଇଛନ୍ତି । ଲୋକଟାକୁ ମୁଁ କୌଶଳରେ ନେଇ ଯାଇଥିଲି । କିନ୍ତୁ ସେ ଉ-ଦ୍ଦେ-ଶ୍ୟ -ମୋ-ର—" କହୁ କହୁ ସଦାନନ୍ଦ ଭୂପୃଷ୍ଠରେ ଲେଟିଗଲେ ।

"କଣ ହେଲା ?" ବୋଲି ସମସ୍ତେ ଚମକି ଉଠିଲେ । ବହୁ ଚେଷ୍ଟା କରି ମୁଧା ସଦାନନ୍ଦ ପ୍ରକୃତିସ୍ଥ ହେଲେ ନାହିଁ—ଅସ୍ବାଭାବିକ ସ୍ବରରେ ଘନ ଘନ ଶବ୍ଦ କରିବାକୁ ଲାଗିଲେ କେବଳ । ଶେଷରେ ଡାକ୍ତରଖାନାକୁ ନେବାକୁ ସ୍ଥିର କରି କନେଷ୍ଟବଲ ଦୁଇ ଜଣ ତାଙ୍କୁ ମୋଟରରେ ଉଠାଇ ଦେବାପାଇଁ ଉଦ୍ୟତ ହେଉଅଛନ୍ତି, ସେ ଦୁଇ ଝଲକା ବାନ୍ତି କରି ପକାଇଲେ । ତା ପରେ ଗୋଟିଏ ହିକ୍କା ଉଠିଲା, ସଙ୍ଗେ ସଙ୍ଗେ ତାଙ୍କର ଦୁଇ ଚକ୍ଷୁ ବୁଜି ହୋଇଗଲା ଚିରଦିନ ପାଇଁ । ମୁଗ୍ଧ ଜନତା ସ୍ତବ୍‌ଧ ଭାବରେ ଅନାଇ ରହିଲେ । ପରେ ସଦାନନ୍ଦଙ୍କର ସେ ବାନ୍ତି ପରୀକ୍ଷା କରିବାରୁ ସେଥିରେ ଅଫିମ ମିଶିଥିବାର ଜଣାଗଲା ।

ଯଥାସମୟରେ ମୋକଦ୍ଦମାର ବିଚାର ହୋଇ ରାୟ ବାହାରିଲା—ସାକ୍ଷୀ, ସିରସ୍ତାଦାର, ପୁରନ୍ଦଲ ତିନିଜଣ ପ୍ରତ୍ୟେକ ଛ ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ପାଇଲେ, ବହାରି ଅଠର ବର୍ଷ ସଶ୍ରମ କାରାଦଣ୍ଡ ପାଇଲା । ଜନାର୍ଦ୍ଦନ ପଢ଼ିଆରି ଓ ତାହାର ସଙ୍ଗୀମାନେ ଚୂଡ଼ଙ୍ଗ ସାହିର ମଧୁପଢ଼ିଆରିଙ୍କ ଘରେ ହୋଇଥିବା ଚୋରିର ଅସାମୀ ବୋଲି ପ୍ରମାଣିତ ହେବାରୁ ସେମାନଙ୍କ ଉପରେ ଥୋଡ଼ାଏ କେସ୍ ରୁଜୁ କରାଗଲା । ବହାରିକୁ ତାର ଗୁପ୍ତ ବିବାହରେ ସାହାଯ୍ୟ କରିଥିବା ଅପରାଧରେ କଟକର ମାଜିଷ୍ଟ୍ରେଟ ସାହେବ ପ୍ରତ୍ୟେକଙ୍କୁ ତିନି ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡର ଆଦେଶ ଦେଇ ସେମାନଙ୍କୁ ପୁଣି

କୋର୍ଟକୁ ପଠାଇଦେଲେ । ଅନ୍ୟାନ୍ୟ ଦସ୍ୟୁମାନେ ପ୍ରତ୍ୟେକ ତିନି ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ଭୋଗ କରିବାର ଆଦେଶ ମଧ୍ଯ ପାଇଲେ ।

ଜନାର୍ଦ୍ଦନ ପଢ଼ିଆରି ଓ ତାହାର ଆଉ ଚାରି ଜଣ ସଙ୍ଗୀଙ୍କର ମୋକଦ୍ଦମା ପୁରୀ କୋର୍ଟରେ ପୁଣି ବିଚାର ହୋଇ ପ୍ରତ୍ୟେକ ଛଅ ବର୍ଷ ଜେଲଦଣ୍ଡ ପାଇଲେ । ମୋହନ ଦାଶ, ଧୀରେନ୍ଦ୍ରନାଥ ସିଂହ ପ୍ରଭୃତି ଆଉ କେତେ ଜଣ ଗୁଲିଖୋର, ରାଜକିଶୋର ଯେଉଁମାନଙ୍କୁ ସନ୍ଦେହ କରୁଥିଲେ, ସେମାନେ ମଧ୍ୟ ଧରା ହୋଇ ଗଲେ । ଯଥାସମୟରେ ସେମାନଙ୍କର ବିଚାର ହେଲା, ସେମାନେ ପ୍ରତ୍ୟେକ ଏକ ବର୍ଷ ସଶ୍ରମ ଜେଲ୍ ଖଟିଲେ ।

ମାଜିଷ୍ଟ୍ରେଟ୍ ଗୋକୁଳଚରଣ କାନୁନ୍‌ଗୋ—ଗୁଣୀ, ଗୁଣଗ୍ରାହୀ ସେ । ରାଜକିଶୋର ଅଳ୍ପଶିକ୍ଷିତ, କୌଣସି ଅଂଶରେ ତାଙ୍କର ସମକକ୍ଷ ନ ହେଲେହେଁ ସେ ରାଜକିଶୋରଙ୍କୁ ମନେ ମନେ ଉଚ୍ଚାସନ ନ ଦେଇ ରହିପାରିଲେ ନାହିଁ । ତାଙ୍କର ଇଚ୍ଛା ହେଲା କିପରି ସେ ରାଜକିଶୋରଙ୍କୁ ପୁରସ୍କୃତ କରାଇବେ । ସେଥିପାଇଁ ତାଙ୍କ ସପକ୍ଷରେ ଯଥେଷ୍ଟ ସୁପାରିସ କରି ସରକାରଙ୍କୁ ଲେଖିଲେ ।

ଜଗନ୍ନାଥ ମଙ୍ଗରାଜ କିଶୋରୀ ମିଳିଥିବାର ଖବର ପାଇ ଘରୁ ଆସିଛନ୍ତି ଯେ ସେହି ଦିନରୁ ରାଜକିଶୋରଙ୍କ ବନ୍ଧୁ ଦୀନବନ୍ଧୁଙ୍କ ବସାରେ ଅଛନ୍ତି । ଚାରିମାସ ହୋଇଗଲାଣି । ମୋକଦ୍ଦମା ବିଚାର ପରେ ଘରକୁ ଯିବେ ଯିବେ ବୋଲି ଏପର୍ଯ୍ୟନ୍ତ ଯାଇ ପାରି ନାହାନ୍ତି । ଦିନ ତିନିଟା ସମୟ ହେବ, କିଶୋରୀ ଦୀନବନ୍ଧୁ ବାବୁଙ୍କ ସ୍ତ୍ରୀ ରତ୍ନମାଳାଙ୍କ ସଙ୍ଗରେ କଣ କଥାବାର୍ତ୍ତା କରୁଛନ୍ତି, ରାଜକିଶୋର ଶୋଇ-ଛନ୍ତି, ଜଗନ୍ନାଥ ମଙ୍ଗରାଜ ଏକୁଟିଆ ବାରଣ୍ଡାରେ ବସିଛନ୍ତି, ପୁରୀରୁ

ସେହି ଦିନ ବାରଟା ଟ୍ରେନରେ ଫେରି ଆସିଛନ୍ତି ସେ—ସନ୍ଧ୍ୟାରେ ରାଜାଙ୍କ ଗୃହକୁ ଯିବାର କଥା, ବସି ବସି ଭାବୁଛନ୍ତି କିପରି ଆଜି କଥା ଛଳନାପ ନେବେ, ଗୋକୁଳ ବାବୁ ସେହି ସମୟରେ ଯାଇ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ। ବୟସରେ ଛୋଟ ହେଲେ ସୁଦ୍ଧା ସେ ହାକିମ ତ, ଗୋଟାଏ ଜିଲ୍ଲାର ମାଲିକ, କମ କ୍ଷମତା ନୁହେ ତାଙ୍କର। ତାଙ୍କୁ ଦେଖି ମଙ୍ଗରାଜେ ଉଠିବାକୁ ଉଦ୍ୟତ ହେଉଥିଲେ ସେ ମଙ୍ଗରାଜଙ୍କ ପଦତଳେ ଭୂମିଷ୍ଠ ପ୍ରଣାମ କରି କହିଲେ, "ବସନ୍ତୁ ଆପଣ, ଉଠୁଛନ୍ତି କାହିଁକି? ପିତାର ପୁତ୍ରକୁ ସମ୍ମାନ ଦେଖାଇବା ନୀତିବିରୁଦ୍ଧ।" ମଙ୍ଗରାଜ ବସିଲେ, ଗୋକୁଳବାବୁ ତାଙ୍କ ପାଖରେ ବସିଯାଇ କହିଲେ, "ଆପଣ ମୋର ପିତାତୁଲ୍ୟ; ମୁଁ ପୁତ୍ରଭାବରେ ପ୍ରାର୍ଥନା କରୁଛି—ଆପଣ ପୂର୍ବର ସବୁ କଥା ଭୁଲିଯାନ୍ତୁ। ବାପା ଆପଣଙ୍କର ଯଥେଷ୍ଟ କ୍ଷତି କରିଛନ୍ତି ସତ; କିନ୍ତୁ ତାର ଉପଯୁକ୍ତ ବିଚାର ହୋଇପାରିଛି, ବର୍ତ୍ତମାନ ସେ ବୈରଭାବ ଭୁଲି ମୋତେ ପୁତ୍ର ଭାବରେ ଗ୍ରହଣ କରନ୍ତୁ।" ମଙ୍ଗରାଜ ପୂର୍ବଦିନ—ଥରେ ରାଜକିଶୋରଙ୍କ ମୁହଁରୁ ଠିକ୍ ଏହି କଥା ଶୁଣିଥିଲେ। ଆଜି ଗୋକୁଳ ବାବୁଙ୍କ ମୁହଁରୁ ଶୁଣିଲେ। ଆନନ୍ଦାଶ୍ରୁରେ ତାଙ୍କର ନେତ୍ର ଯୁଗଳରେ ଛଳଛଳ ହୋଇ ଆସିଲା। ସେ ଗୋକୁଳ ବାବୁଙ୍କୁ ବାତ୍ସଲ୍ୟପୂର୍ଣ୍ଣ ହୃଦୟରେ କୋଳକୁ ଟାଣିନେଇ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ। ଗୋକୁଳ ବାବୁଙ୍କ ଆଖିରେ ମଧ୍ୟ ପାଣି ଆସିଲା। କେତେକ ମୁହୂର୍ତ୍ତ ପରେ ସେ ଅଶ୍ରୁ ସମ୍ବରଣ କରି କହିଲେ— "ମୋର ଗୋଟିଏ ବିନୀତ ଅନୁରୋଧ ରକ୍ଷା କରିବେ କି? ରାଜକିଶୋରଙ୍କ ପରି ସୁପୁରୁଷ ଓ ଗୁଣବାନ୍ ଯୁବକ ମୁଁ ଖୁବ୍ କମ୍ ଦେଖିଛି। ତାଙ୍କ ସହିତ କିଶୋରୀର ବିବାହ ହେଲେ କିଶୋରୀ ଚିରସୁଖୀ ହେବ ବୋଲି ମୋର ବିଶ୍ୱାସ। ଆପଣଙ୍କର ସେଥିରେ କିଛି ଆପତ୍ତି ଅଛି କି?

ଜଗନ୍ନାଥ ମଙ୍ଗରାଜ ତ ବହୁ ଦିନରୁ ଏ କଥା ସ୍ଥିର କରିଅଛନ୍ତି । ରାଜକିଶୋର ତାଙ୍କୁ ହାର ଦେଖାଇ ଫେରିବା ସମୟରେ ସେ ଯେତେବେଳେ ୫୧୦୦୦ ର ନୋଟ ତାଡ଼ାଟି ତାଙ୍କ ହାତକୁ ବଢ଼ାଇ-ଦେଲେ ଏବଂ ଦରକାର ହେଲେ ପନ୍ଦ ଲେଖିତାକୁ କହିଲେ, ସେତିକିବେଳେ ସେ ମନେ ମନେ କହିଥିଲେ, "ଯା ବାପା, ମାଲୁ ମୋର ଖୋଜ ବାହାର କର—ସେହି ଲାବଣ୍ୟ ପିତୁଲାଟିକୁ ଅର୍ପଣ କରି ତୋତେ ପୁରସ୍କୃତ କରିବି ।"

ଗୋକୁଳବାବୁଙ୍କର କଥା ଶୁଣି ମଙ୍ଗରାଜଙ୍କର ଶୋକ-ନଦୀ ଉଚ୍ଛୁଳି ଉଠିଲା । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ତୋଠାରୁ କଣ ମୁଁ ବେଶୀ ଜାଣେ ? ତୁ ବୟସରେ ସାନ ହେଲେହେଁ ମୋ ଠାରୁ ଜ୍ଞାନବୃଦ୍ଧ । ତୁ ଯଦି ରାଜୁକୁ ସତପାତ୍ର ବୋଲି ବିବେଚନା କରୁ, ମୁଁ କାହିଁକି ଆପତ୍ତି କରିବି ? କିଶୋରୀ ଯେ ତୋର ସାନ ଭଉଣୀ ।" ଗୋକୁଳ ବାବୁଙ୍କର ଅନ୍ତର ପୁଲକରେ ଭରିଗଲା । ସେ ସେହି ମୁହୂର୍ତ୍ତରେ ରାଜକିଶୋର ଏବଂ କିଶୋରୀକୁ ସେଠାକୁ ଡାକି ଆଣିଲେ । ରାଜକିଶୋରଙ୍କୁ ଲକ୍ଷ୍ୟ କରି କହିଲେ, "ଭାଇ ରାଜକିଶୋର, ତୁମେ କ୍ଷୁଦ୍ର ହୋଇ ସୁଦ୍ଧା ଯେଉଁ ବୃହତ୍ କର୍ମ ସାଧନ କରିଅଛ, ତାହା ଅସାଧାରଣ । ତମର ସେ ଅସାଧ୍ୟ ସାଧନର ପୁରସ୍କାର ବୋଧ ହୁଏ ନାହିଁ । ତଥାପି ଆମେ ଗୋଟିଏ ପୁରସ୍କାର ଦେବାକୁ ଇଚ୍ଛା କରୁଛୁ— ଗ୍ରହଣ କରିବ ତ ?"

କଣେ ମାଜିଷ୍ଟ୍ରେଟଙ୍କ ଠାରୁ 'ଭାଇ' ସମ୍ବୋଧନ ପାଇବେ ବୋଲି ରାଜକିଶୋର ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ସେ ନିତାନ୍ତ ସଙ୍କୁଚିତ ହୋଇ କହିଲେ, "ମୋ ପରି ନଗଣ୍ୟ ଲୋକର ଆପଣଙ୍କ ଦାନକୁ ଅଗ୍ରାହ୍ୟ କରିବାର କ୍ଷମତା କାହିଁ ?"

ଗୋକୁଳ ବାବୁ ତାଙ୍କର ହାତ ଧରି ନିଜ ପାଖକୁ ଟାଣିନେଇ କହିଲେ, "ନା ଭାଇ, ସେପରି ଭାବ ନାହିଁ । ଏ ପୃଥିବୀରେ ବଡ଼ ହୋଇ କେହି ନାହିଁ—ସମସ୍ତେ ସମାନ । ଯେ ବଡ଼, ସେ ଅବ୍ୟକ୍ତ, ଅନନ୍ତ, ଅସୀମ ।" ତତ୍ପରେ କିଶୋରୀର ହାତ ଧରି ରାଜକିଶୋରଙ୍କ ପାଖକୁ ନେଇ ଆସିଲେ । କହିଲେ, "ଭାଇ ରାଜକିଶୋର, ଏ ଭଉଣୀଟିକୁ ମୋର ଅନ୍ତରରୁ ତମ ହସ୍ତରେ ଅର୍ପଣ କଲି । ଆଶା କରେ, ତମେ ସାଦରରେ ଗ୍ରହଣ କରି ଆମ୍ଭମାନଙ୍କର ଆଶା ପୂର୍ଣ୍ଣ କରିବ ।" ରାଜକିଶୋର ଏବଂ କିଶୋରୀ ଉଭୟଙ୍କର ଅନ୍ତରରେ ପୁଲକର ସ୍ରୋତ ବହିବାକୁ ଲାଗିଲା । ସେ ଉଭୟେ ତ ସେହି କଥା ଚାହୁଁଥିଲେ; କିନ୍ତୁ ଲଜ୍ଜାରେ ଦୁଇ ଜଣଙ୍କର ମସ୍ତକ ଅବନତ ହୋଇ-ଗଲା । ଜଗନ୍ନାଥ ମଙ୍ଗରାଜେ ତାଙ୍କ ମସ୍ତକରେ ହସ୍ତ ସଞ୍ଚାଳନ କରି କହିଲେ, "ମୁଁ ଆଶୀର୍ବାଦ କରୁଛି, ପରମ ପିତା ତୁମକୁ ସଦ୍‌ବୁଦ୍ଧି ଦିଅନ୍ତୁ । ତୁମ୍ଭମାନଙ୍କର ଜୀବନ ଚିର ସୁଖମୟ ହେଉ ।"



## —ବିଂଶ ପରିଚ୍ଛେଦ—

ରାଜକିଶୋର ହେମବାଇ ଗଳାରେ ଗୋଟିଏ ସ୍ୱର୍ଣ୍ଣ ହାର ଲମ୍ବାଇ ଦେଇଥିଲେ, ପାଠକମାନଙ୍କର ମନେ ଅଛି କି ? ସେ ହାର ସେ କେଉଁଠାରୁ ପାଇଥିଲେ, କେହି ଅନୁମାନ କରିପାରୁଛନ୍ତି ଭଲା ?

ବାଲେଶ୍ୱର ସଦର ସବ୍‌ଡିଭିଜନର ଏସ୍. ଡି. ଓ, ବୈକୁଣ୍ଠ ବାବୁଙ୍କ ଝିଅ ବିଦ୍ୟୁଲ୍ଲତା କଥା ସ୍ମରଣ ଅଛି ତ ? ପ୍ରଥମ ଦର୍ଶନରେ ତାର ରାଜକିଶୋର ତନ୍ମୟ ହୋଇଯାଇଥିଲେ । ବୈକୁଣ୍ଠ ବାବୁଙ୍କର ପୁତ୍ର ମୁରଲୀକୁ ସନ୍ଧ୍ୟା ସମୟରେ ବୁଲାଇ ନେବା ସୁଯୋଗରେ ଗଁଞ୍ଜ-

କିଶୋର ପ୍ରତ୍ୟହ ବନ୍ଦୁର ଦର୍ଶନ ଲାଭ ତଥା ବାକ୍ୟସୁଧା ପାନ କରିବାର ସୁଯୋଗ ପାଇଲେ । ଏହିପରି ଅତ୍ୟଳ୍ପ ଦିନମାନ ଅତି-ବାହିତ ହୋଇଛି, ଉଭୟଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଜନ୍ମିଲା । ଯୁବକ ଯୁବତୀ ମଧ୍ୟରେ ସୌହାର୍ଦ୍ଦ୍ୟ, ପୁଣି ଏକାନ୍ତ ମିଳନ । ପ୍ରଣୟ ସ୍ୱତଃ ଆସି ତାର ଆସନ ଅଧିକାର କଲା । ବାକ୍ୟରେ ପ୍ରକାଶ ନ କଲେ ମଧ୍ୟ ଉଭୟେ ଉଭୟଙ୍କୁ ପ୍ରେମଚକ୍ଷୁରେ ଦେଖିବାକୁ ଲାଗିଲେ । ରାଜ-କିଶୋର ଦେଖିଲେ—ବନ୍ଦୁ ସୁନ୍ଦରୀ, ଷୋଡ଼ଶୀ, ଶିକ୍ଷିତା···ତାଙ୍କର ଉପଯୁକ୍ତ······ହେଲେ ଦୁର୍ଲଭ । ସେଥିପାଇଁ ଆଶା ନୈରାଶ୍ୟର ଆବର୍ତ୍ତରେ ପଡ଼ି ଘାଣ୍ଟି ହେବାକୁ ଲାଗିଲେ । ବନ୍ଦୁ ଦେଖିଲା—ରାଜକିଶୋର ସୁନ୍ଦର, ଶିକ୍ଷିତ, ଯୁବକ···ତାର ଉପଯୁକ୍ତ ବୋଲି ସେ ମନେ ମନେ ବାଛି ନେଲା । ତା ପକ୍ଷରେ ରାଜକିଶୋର ତ ଦୁର୍ଲଭ ନୁହନ୍ତି । ସେ ଯଦି ଜିଦ୍ ଧରିବ, ଏକାନ୍ତ ଅନିଚ୍ଛା ଥିଲେ ସୁଦ୍ଧା କନ୍ୟାର ଅଳିକୁ ପିତାମାତା କଣ ଅଗ୍ରାହ୍ୟ କରିପାରିବେ ?

ବପିନ ବାବୁଙ୍କର ଛୁଟି ଶେଷ ହେଲା—ସେ ବାଲେଶ୍ୱର ଗୁଲି-ଗଲେ; ବନ୍ଦୁ କିନ୍ତୁ ପୁରୀରେ ରହିଲା । ରାଜକିଶୋର ଟାଉନ୍ ଥାନାରେ ଗୁକିରୀ ପାଇଲେ ସୁଦ୍ଧା ବୈକୁଣ୍ଠ ବାବୁଙ୍କ ଘରକୁ ଯିବା ଆସିବା ତାଙ୍କର ବନ୍ଦ ନ ଥାଏ । ମୁରଲୀକୁ ଦେଖିବା ବାହାନାରେ ଯାଇ ବନ୍ଦୁର ବିଧୁ-ବଦନ ଦର୍ଶନ ଲାଭ କରନ୍ତି ।

ସେ ଦିନ ରାଜକିଶୋରଙ୍କ ବିଷଣ୍ଣ ବଦନ ଦେଖି ବନ୍ଦୁ ଯେତେ-ବେଳେ ପଗ୍ଲରିଲା, "ଆଜି ତମର ମୁହଁଟା ଶୁଖିଯାଇଛି କାହିଁକି ?" ଉତ୍ତରରେ ରାଜକିଶୋର ଏଣୁ ତେଣୁ ନାନା କାରଣ ଦେଖାଇଲେ; ବନ୍ଦୁର କିନ୍ତୁ ମନ ମାନିଲା ନାହିଁ । ସେ ଜିଦ୍ ଧରିଲା, "ସତ କୁହ, ତୁମ୍ଭର ଦୁଃଖିତ ହେବାର କାରଣ କଣ ?" ରାଜକିଶୋର ନାଗ୍ଳର । ସେ ବାଧ୍ୟ ହୋଇ ପ୍ରକୃତ କଥା ପ୍ରକାଶ କଲେ ।

ବଦୁ ଯେତେବେଳେ ଜାଣିପାରିଲା, ରାଜକିଶୋରଙ୍କର କେବଳ ଧନପାଇଁ ଗୋଟାଏ ସୁନାର ହାର ଅବଶ୍ୟକ, ସେ ତତ୍‌କ୍ଷଣାତ୍ ତାର ଗଳାରୁ ହାର ବାହାର କରି ପ୍ରଫୁଲ୍ଲ ଚିତ୍ତରେ ରାଜକିଶୋରଙ୍କୁ ଦେଇ-ଦେଲା । କହିଲା—"ଏ ହାରଟା ନିଅ । ଯେତେ ଧନ ଇଚ୍ଛା ରଖ, ମୋର ଆବଶ୍ୟକ ନାହିଁ ।" ବଦୁଠାରୁ ହାର ନେବା ରାଜକିଶୋରଙ୍କର ଉଦ୍ଦେଶ୍ୟ ନୁହେ । ତଥାପି ନ ନେଲେ ନ ଚଳେ, ଅନ୍ୟ କେଉଁଠାରୁ ବା ସେ ପାଇବେ ? କିଣି ପାରିଥାନ୍ତେ; କିନ୍ତୁ ଅର୍ଥର ଅଭାବ । ଦରମା ତିରିଶଟି ମାତ୍ର ଟଙ୍କା । ସେଥିରୁ ନିଜ ଖର୍ଚ୍ଚ ଯାଇ ଯାହା ବଳେ, ପୁସ୍ତକ କ୍ରୟ କରିବାରେ ସମସ୍ତ ବ୍ୟୟ କରନ୍ତି । ତାଙ୍କର ପ୍ରବଳ ଜ୍ଞାନ ପିପାସା ହେତୁ ସେ ଅନେକ ପୁସ୍ତକ ଓ ଅନ୍ୟାନ୍ୟ ଉପାଦେୟ ପତ୍ରିକାମାନ ଅଧ୍ୟୟନ କରିବାକୁ ବଡ଼ ଭଲ ପାଉଥିଲେ । ରାଜକିଶୋର କେବଳ ମାଳତୀ ପିନ୍ଧିଥିବା ହାରର ଇତିହାସ ଅବଗତ ହେବା ଅଭିପ୍ରାୟରେ ବଦୁର ହାରଟି ହେମ ଗଳାରେ ଲମ୍ବାଇଦେବାକୁ ବାଧ୍ୟ ହୋଇଥିଲେ ।

ବର୍ତ୍ତମାନ ସୁଦ୍ଧା ବଦୁ ପୁରୀରେ ଅଛି । ଇତିମଧ୍ୟରେ ଥରେ ତାର ବିବାହ ପ୍ରସ୍ତାବ ହୋଇଥିଲା । ସେ କିନ୍ତୁ ସୁସ୍ପଷ୍ଟ ଉତ୍ତରରେ ଜଣାଇଦେଲା ଯେ ତା'ର ବିବାହରେ ଇଚ୍ଛା ନାହିଁ । ବିପିନବାବୁ ଶିକ୍ଷିତ, ବୈକୁଣ୍ଠ ବାବୁ ମଧ୍ୟ ଅଶିକ୍ଷିତ ନୁହନ୍ତି । କନ୍ୟାର ଇଚ୍ଛା ବିରୁଦ୍ଧରେ ସେମାନେ ଠିଆ ହେବାକୁ ସାହସ କଲେ ନାହିଁ । ଅଗତ୍ୟା ବଦୁର ବିବାହ ପ୍ରସ୍ତାବ ସ୍ଥଗିତ ହେଲା ।

ଜଗନ୍ନାଥ ମଙ୍ଗରାଜ ଯେତେବେଳେ କିଶୋରୀ ଓ ରାଜକିଶୋର ଉଭୟଙ୍କ ମସ୍ତକରେ ହାତ ବୁଲାଇ ଆଶୀର୍ବାଦ କଲେ, ସେତିକି-ବେଳେ ସହସା ରାଜକିଶୋରଙ୍କ ହୃଦୟରେ ବଦୁକଥା ଜାଗି ଉଠିଲା । ବଦୁ ତାର ନିଜ ଇଚ୍ଛାରେ ବିବାହ ପ୍ରସ୍ତାବ ସ୍ଥଗିତ ରଖିଛି ବୋଲି

ସେ ଜାଣିଛନ୍ତି । ବନ୍ଦୁର ବିବାହ କରିବାକୁ ଏତେ ଅନିଚ୍ଛା କାହିଁକି ? ତାଙ୍କ ନିଧିବାବୁ ବଳାତ ଫେରନ୍ତା—ରେଭେନ୍ସା କଲେଜର ପ୍ରଫେସର, ମୋଟା ବେତନ ପାନ୍ତି—ସୁନ୍ଦର, ସୁପୁରୁଷ । ସର୍ବାଂଶରେ ସେ ବନ୍ଦୁର ଉପଯୁକ୍ତ; ତଥାପି ବନ୍ଦୁର ଅନିଚ୍ଛା କାହିଁକି ? ସେ କଣ ରାଜକିଶୋରଙ୍କୁ ଭଲ ପାଏ ? ରାଜକିଶୋରଙ୍କ ଆଶାରେ କଣ ...... ? ସେ ଦିନ ହାରଟାଏ ଯେତେବେଳେ ବେକରୁ ବାହାର କରିଦେଲା, ରାଜକିଶୋର ବୁଝିଥାନ୍ତି ତାର ମନୋଗତ ଭାବ । ମରମୀ ପିନା ମରମ କଥା ବୁଝେ ! !

ରାଜକିଶୋର ମହା ମୁସ୍କିଲରେ ପଡ଼ିଲେ । କଣ କରିବେ ? କାହାକୁ ତ୍ୟାଗ କରିବେ ? ଏକ ପାଖରେ କିଶୋରୀ, ଅପର ପାଖରେ ବନ୍ଦୁ—ଉଭୟଙ୍କର ସମାନ ଆକର୍ଷଣ । ଉପାୟ କଣ ? ଉପାୟ ହେଉଛି ଦୁଇଟି । ଯଦି ତ୍ୟାଗ କରିବାକୁ ହୁଏ ଉଭୟଙ୍କୁ ତ୍ୟାଗ କରିବା, ଗ୍ରହଣ କରିବାକୁ ହେଲେ ଉଭୟଙ୍କୁ ଗ୍ରହଣ କରିବା; କିନ୍ତୁ ଉଭୟ କାର୍ଯ୍ୟ ଅସାଧ୍ୟ । ତ୍ୟାଗ ତ ଏକବାରେ କରି ହେବ ନାହିଁ । ଏ କ୍ଷେତ୍ରରେ ତା ହେଲେ କର୍ତ୍ତବ୍ୟ କଣ ?

ରାଜକିଶୋର ସେ ଦିନ ରାତି ସାରା ଭାବିଲେ ସେ ବିଷୟରେ । ଶେଷରେ ସ୍ଥିର କଲେ—ସେ କିଶୋରୀକୁ ଗ୍ରହଣ କରିବେ, ବନ୍ଦୁକୁ ବୁଝା ସୁଝା କରି କୌଣସି ଉପାୟରେ ତାର ମନର ପରିବର୍ତ୍ତନ ଘଟାଇବେ । ପରଦିନ ରାଜକିଶୋର ଜଗନ୍ନାଥ ଦର୍ଶନ ଛଳନା କରି ଗୋକୁଳ ବାବୁଙ୍କ ସଙ୍ଗରେ ଯେନ ପୁରୀ ଗଲେ । ବୈକୁଣ୍ଠ ବାବୁ ତ ରାଜକିଶୋରଙ୍କୁ ପୁତ୍ର ପରି ସ୍ନେହ କରନ୍ତି, ସେ ସିଧା ଯାଇ ତାଙ୍କର ଘରେ ପହଞ୍ଚିଲେ । ଗୋକୁଳ ବାବୁଙ୍କ ସଙ୍ଗରେ ବୈକୁଣ୍ଠ ବାବୁଙ୍କର

ପରିଚୟ ହେଲ । ବୈକୁଣ୍ଠ ବାବୁ ଅତ୍ୟନ୍ତ ଆନନ୍ଦର ସହିତ ଗୋକୁଳ ବାବୁଙ୍କୁ ଅଭ୍ୟର୍ଥନା କଲେ ।

ସନ୍ଧ୍ୟା ଅତୀତ ହୋଇଗଲଣି । ବୈକୁଣ୍ଠ ବାବୁଙ୍କ ବୈଠକଖାନାରେ ଦୁଇ ଜଣର ମାଙ୍କଡ଼ ଗୋଷ୍ଠୀ ବସି ସୁଖ ଦୁଃଖ ହେଉଛନ୍ତି । ରାଜକିଶୋର ମୁରଲୀର ପଢ଼ିବା ଘରକୁ ଆସିଲେ । ମୁରଲୀର ଦେହ ଭଲ ନ ଥିବାରୁ ସେ ସେଠାରେ ଉପସ୍ଥିତ ନ ଥିଲା । ରାଜକିଶୋର ଏକାକୀ ସେ ଘରେ ବସି ଅନ୍ୟମନସ୍କ ଭାବରେ ଗୋଟାଏ ବହିର ପୃଷ୍ଠା ଓଲଟାଇବାକୁ ଲାଗିଲେ ।

ପ୍ରତ୍ୟେକ ସନ୍ଧ୍ୟାରେ ନାଟକ ହେଉ, ଉପନ୍ୟାସ ହେଉ କିଛି ନା କିଛି ପଢ଼ିବା ବିଧୁର ଅଭ୍ୟାସ । ସେ ତାର ଅଭ୍ୟାସାନୁଯାୟୀ ମୁରଲୀର ପଢ଼ିବା ଘରେ ଉପସ୍ଥିତ ହେଲା । ରାଜକିଶୋର ଓ ବିଧୁ ଦୁଇ ଜଣଙ୍କ ଭିନ୍ନ ସେଠାରେ ଆଉ କେହି ନାହିଁ । ରାଜକିଶୋର ତାଙ୍କର ଉଦ୍ଦେଶ୍ୟ ସାଧନର ସୁଯୋଗ ପାଇଲେ । ଅନ୍ୟାନ୍ୟ କେତେକ କଥାବାର୍ତ୍ତା ପରେ କହିଲେ, "ବିଧୁ, ତମକୁ ଗୋଟାଏ କଥା କହିବାର ଅଛି ।" ବିଧୁ ତ ସେହି କଥା ଶୁଣୁଛି । ସେ ଯଦି ସ୍ତ୍ରୀ ନ ହୋଇ ପୁରୁଷ ହୋଇଥାନ୍ତା, ବହୁଦିନ ପୂର୍ବରୁ କହି ସାରନ୍ତାଣି ସେ କଥା । ଅବଳା-ସୁଲଭ ଲଜ୍ଜାବଶତଃ ସେ କହିପାରୁ ନାହିଁ ସିନା ! ତଥାପି ସେ କର୍ତ୍ତବ୍ୟରେ ତ୍ରୁଟି କରି ନାହିଁ ତ । ବାପା, ବଡ଼ବାପା ଯେତେବେଳେ ତାର ବିବାହ ପ୍ରସ୍ତାବ ଉଠାଇଲେ, ସେ ପରିଷ୍କାର ଭାବରେ ସ୍ଥଗିତ କରାଇ ଦେଇଛି । କାହିଁକି ? ରାଜକିଶୋରଙ୍କ ଲାଗି ସିନା ! ରାଜକିଶୋରଙ୍କ ଠାରୁ ଏହି କଥା ପଦକ ଶୁଣିବା ଲାଗି ସେ କେତେ ଆକାଂକ୍ଷିତ ନୁହେ ?

ବାଦୁର ଅନ୍ତର କମ୍ପିତ ହୋଇ ଉଠିଲା । ତାର ପ୍ରତ୍ୟେକ ଶିରା ପ୍ରଶିରାରେ ପୁଲକର ପ୍ରବାହ ବହିବାକୁ ଲାଗିଲା । ସେ ରାଜ-କିଶୋରଙ୍କୁ ଥରେ ଅଭିନନ୍ଦନରେ ଚାହିଁ ମସ୍ତକ ନତ କଲା ସରମରେ । ରାଜକିଶୋର କହିଲେ, "କହିବ ନାହିଁ ତ ଅନୁରୋଧ କରିବି— ରଖିବ କି ?" ବାଦୁର ଆରକ୍ତ ଗଣ୍ଡଯୁଗ ଲଜ୍ଜାରେ ପାଟଳିତ ହୋଇ-ଗଲା । ଭାବପ୍ରବଣ ଯୁବତୀର ହୃଦୟ ତାର । ଭାବୋଚ୍ଛ୍ୱାସରେ ବିଭୋର ହୋଇ ସେ କିଛି କହିପାରିଲା ନାହିଁ । ରାଜକିଶୋର କହିଲେ "ବାଦୁ, କିଛି କହୁ ନାହଁ ଯେ । ମୋର ଅନୁରୋଧ ରକ୍ଷା କରିବ ନାହଁ ?" ବାଦୁ ପୁଲକ-କମ୍ପିତ କୋମଳ କଣ୍ଠରେ କହିଲା, "ଅନୁରୋଧ କାହିଁକି, କଣ କରିବାକୁ ହେବ ଆଦେଶ କର ।" ରାଜ-କିଶୋର ତାର ମନୋଗତ ଭାବ ବୁଝି ପାରିଲେ । "ଆଦେଶ କର" ଏହି ଦୁଇଟି ପଦରେ ବାଦୁ ସୁସ୍ପଷ୍ଟ ଜଣାଇ ଦେଲା ଯେ "ରାଜ-କିଶୋରଙ୍କୁ ସେ ତାର ହୃଦୟାସନରେ ଉଚ୍ଚତମ ସ୍ଥାନ ଦେଇଛି ।" ରାଜକିଶୋର ତ ପୂର୍ବରୁ ପ୍ରସ୍ତୁତ ହୋଇ ଅସିଛନ୍ତି । ସେ ଶାନ୍ତ ବିମ୍ବା-ବିଚଳିତ ନ ହୋଇ ସହଜ କଣ୍ଠରେ କହିଲେ, "ମୋ ସଙ୍ଗରେ ଯେଉଁ ବାବୁ ଅସିଛନ୍ତି ତାଙ୍କୁ ଚିହ୍ନ ?"

"ଚିହ୍ନେ ନାହିଁ—ଶୁଣିଛି ସେ କଟକ କଲେଜର ମାଜିଷ୍ଟ୍ରେଟ ସାହେବ ।"

ରାଜକିଶୋର ଅଉ କିଛି କହିଲେ ନାହିଁ । ବାଦୁ ଟିକିଏ ଅପେକ୍ଷା କରି କହିଲା, "ନୀରବ ହୋଇଗଲ କାହିଁକି ?" ରୋଗୀ ବସିଲା ପରି ରାଜକିଶୋର ଜୋର କରି ଓଷ୍ଠାଧର ପ୍ରାନ୍ତରେ କ୍ଷୀଣ ହାସ୍ୟରେଖାଟି ଫୁଟାଇ କହିଲେ, "ତାଙ୍କ ସହିତ ତୁମ୍ଭର ମିଳନ ହେଲେ ଭଲ ହୁଅନ୍ତା ନାହିଁ । ସର୍ବାଂଶରେ ସେ ତୁମ୍ଭର ଉପଯୁକ୍ତ

ବୋଲି ମୋର ବିଶ୍ୱାସ ।" ବନ୍ଧୁଙ୍କ ସନ୍ଦେହ ଯେପରି କିଏ ହିମାଳୟର ଉଚ୍ଚତମ ଶୃଙ୍ଗ ଉପରୁ ଗଭୀର ଅନ୍ଧକୂପ ମଧ୍ୟକୁ ଫିଙ୍ଗିଦେଲା । ଅବ୍ୟକ୍ତ ବେଦନାରେ ତାର ସର୍ବାଙ୍ଗ ସିର ସିର୍ ହୋଇ ଉଠିଲା । ରାଜକିଶୋରଙ୍କ ଠାରୁ ଏହି କଥା ଶୁଣିବ ବୋଲି ସେ କଣ ଆଶା କରିଥିଲା ?

ବନ୍ଧୁର ଶୁଷ୍କ ମୁଖମଣ୍ଡଳକୁ ଚାହିଁ ରାଜକିଶୋର ତାର ଅନ୍ତରର ବେଦନା ବୁଝିପାରିଲେ । କହିଲେ "ବନ୍ଧୁ, ମୁଁ ଜାଣେ ତୁମ୍ଭର ମନ-କଥା । କିନ୍ତୁ କଣ କରିବ ?" ତାପରେ କିଶୋରୀ ସଙ୍ଗରେ ସେ ଯେପରି ଅଚ୍ଛେଦ୍ୟ ବନ୍ଧନରେ ବାନ୍ଧିହୋଇ ଯାଇଛନ୍ତି, ସମସ୍ତ କଥା କହିଗଲେ; ବନ୍ଧୁ ନିର୍ବାକ୍ ନିସ୍ପନ୍ଦ । କେତେ କ୍ଷଣ ନୀରବରେ ଅତିବାହିତ ହେବାପରେ ରାଜକିଶୋର ଧୀର କଣ୍ଠରେ କହିଲେ "ବନ୍ଧୁ ।" ବନ୍ଧୁ ନିରୁତ୍ତର । ରାଜକିଶୋର ତାର ପାଖକୁ ଘୁଞ୍ଚି ଯାଇ ଆଦରରେ ତାର ପୃଷ୍ଠଦେଶରେ ହସ୍ତ ସଂଚାଳନ କରି କହିଲେ, "ବନ୍ଧୁ, କ୍ଷମା କର ! ମୁଁ ·········।" ବନ୍ଧୁ ଘୁଞ୍ଚିଯାଇ କ୍ରୋଧକମ୍ପିତ କଣ୍ଠରେ କହିଲା, "ନିଷ୍ଠୁର ! ପୁରୁଷ ହୃଦୟ ପାଷାଣରୁ ନିର୍ମିତ, ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଯଦି······" କ୍ରୋଧାବେଗରେ ଆଉ କହିପାରିଲା ନାହିଁ । ରାଜକିଶୋର ତାକୁ କୋଳକୁ ଟାଣିଆଣି କହିଲେ, "ମୁଁ ଇଚ୍ଛା କରି ଏପରି କରି ନାହିଁ ବନ୍ଧୁ ! ଶୁଣ—କିଶୋରୀ ଅବିବାହିତା ଯୁବତୀ ହେଲେ ମଧ୍ୟ ସେ ତାର ଧର୍ମରୁ ଚ୍ୟୁତ ହୋଇ ନାହିଁ । ଏହା ମୁଁ ଶପଥ କରି କହିପାରେ । ଅନ୍ୟ କେତେ ଜଣ୍, ଯେଉଁମାନେ ତାର ସେ ବନ୍ଦୀ ଜୀବନ ପ୍ରତ୍ୟକ୍ଷ କରିଛନ୍ତି, ସେମାନେ ମଧ୍ୟ କହିବେ ; କିନ୍ତୁ ସମାଜ କଣ ତାହା ବିଶ୍ୱାସ କରିବ ? ବର୍ତ୍ତମାନ କାଳର ଗତି ତ ଦେଖୁଛ ! ଯେଉଁମାନେ କୁଳବୃଦ୍ଧ ସମାଜପତି ବୋଲି ବାନା ଉଡ଼ାଉଛନ୍ତି, ଅନ୍ୟାୟ, ଅତ୍ୟାଚାର, ଅନାଚାର, ବ୍ୟଭିଚାର ଏସବୁ ସେମାନଙ୍କର

ନିତ୍ୟ ନୈମିତ୍ତିକ କାର୍ଯ୍ୟ ହୋଇଛି । ନିଜର ସହସ୍ର ଦୋଷ ଥିଲେ ସୁଦ୍ଧା ପରର ବିନ୍ଦୁମାତ୍ର ଦୋଷ ଅନ୍ୱେଷଣ କରିବାରେ ସେମାନେ ସହସ୍ରାକ୍ଷ । ଶାସ୍ତ୍ରର, ନୀତିର ପ୍ରଣେତା ସେହିମାନେ । ତାଙ୍କ ପକ୍ଷରେ ଯେଉଁଟା ନ୍ୟାଯ୍ୟ, ଅନ୍ୟ ପକ୍ଷରେ ତାହା ଅନ୍ୟାଯ୍ୟ । ତାଙ୍କର ଯେଉଁଟା ପୁଣ୍ୟକାର୍ଯ୍ୟ—ଅନ୍ୟ ପକ୍ଷରେ ତାହା ଅମୋଘ ପାପ । ଆମ୍ଭେମାନେ ଏଡ଼େ ଦୁର୍ବଳ, ଏଡ଼େ ଶକ୍ତିସାମର୍ଥ୍ୟହୀନ ହୋଇ ପଡ଼ିଛୁଁ ଯେ, ସବୁ ଜାଣି ଶୁଣି ସୁଦ୍ଧା ତାହାର ପ୍ରତିବାଦ କରିପାରୁ ନାହିଁ । ବାଧ୍ୟ ହୋଇ ସେହି ନରପିଶାଚମାନଙ୍କର ଆଦେଶ ଦେବାଦେଶ ପରି ଶିରୋଧାର୍ଯ୍ୟ କରୁଛୁଁ । ବର୍ତ୍ତମାନ କିଶୋରୀ ଅବସ୍ଥା ତମେ ତ ବୁଝିପାରୁଛ । ତମେ ନାରୀ—ନାରୀର ଅପମାନରେ ତମ ପ୍ରାଣରେ ଆଘାତ ଲାଗୁ ନାହିଁ ? ମୁଁ ନାରୀର ଆତ୍ମମର୍ଯ୍ୟାଦା, ଆତ୍ମସମ୍ମାନ ରକ୍ଷା କରୁଛି । ତମର ଗର୍ବ ଅନୁଭବ କରିବାର କଥା ସେଥିପାଇଁ । କିଶୋରୀ ଅସହାୟା, ଅନାଶ୍ରିତା—ମୁଁ ତାକୁ ଆଶ୍ରୟ ଦେଇ ନାରୀ ଜାତିର ଗୌରବ ରକ୍ଷା କରିବା ଭଲ ଆଉ ତ କିଛି କରି ନାହିଁ । ତମର କଷ୍ଟ ହେବ ଜାଣି ସୁଦ୍ଧା ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ ଭାବି ମୁଁ ସେ କର୍ମରେ ହସ୍ତକ୍ଷେପ କରିଛି । ତମେ ଶିକ୍ଷିତା, ବୁଦ୍ଧିମତୀ—ନାରୀ ଜାତିର ଗୌରବ ରକ୍ଷା ଲାଗି କଷ୍ଟ ସହିପାରିବ ନାହିଁ ? ଟିକିଏ ସ୍ୱାର୍ଥତ୍ୟାଗ କରି-ପାରିବ ନାହିଁ ? ଭାବି ଦେଖିଲ ମୁଁ ନ୍ୟାଯ୍ୟ କରିଛି କି ଅନ୍ୟାଯ୍ୟ କରିଛି ।" ବିଧୁ ତାର ଉନ୍ମୁଖ କ୍ରୋଧକୁ କୌଣସିମତେ ଦମନ କରିନେଇ କହିଲା, "ମୁଁ ସ୍ୱାର୍ଥତ୍ୟାଗ କରିପାରେ ନ ପାରେ ସେ ଭିନ୍ନ କଥା । କିନ୍ତୁ......" ବାକ୍ୟଟି ଉଚ୍ଚାରିତ ହେଲା ନାହିଁ ବିଧୁର ଅତ୍ୟଧିକ ବାଷ୍ପାବେଗରେ । ରାଜକିଶୋର ତାର ହାତଟି ଧରିପକାଇ କହିଲେ, "ସବୁ ଦୋଷ ମୋର । ଯଦି ତମେ ମୋତେ ସ୍ନେହ କର · "

ବିଧୁ—ମୁଁ ତ ତମକୁ ଦୋଷ ଦେଉ ନାହିଁ ।

ରାଜ—ଦେଉ ନାହିଁ କିପରି ? ମୋତେ ଯଦି ଦୋଷ ନ ଦେଉଛ ସେଥିପାଇଁ ତେବେ ମୋର ଅନୁରୋଧ···

ବନ୍ଧୁ—ନା, ସେପରି ଅନୁରୋଧ କରିବାକୁ ତମକୁ କିଏ ଅଧିକାର ଦେଲା ?

ରାଜ—ତମେ ଦେଇଛ । ତମକୁ ସ୍ନେହ କରିବାର ଅଧିକାର ଦେଇଛ ତ ? ସ୍ନେହ କରିବାର ଯାର ଅଧିକାର ଅଛି, ତାର ମଙ୍ଗଳ କାମନା କରିବାର ଅଧିକାର ନିଶ୍ଚୟ ଅଛି ।

ବନ୍ଧୁ—ମୋର ମଙ୍ଗଳ କାମନା କରିବାର ଅଧିକାର ତମର ଅଛି । କିନ୍ତୁ ଦୁଃଖର ବିଷୟ, ମୁଁ ତାହା ଗ୍ରହଣ କରିପାରୁ ନାହିଁ ।

ରାଜ—କାରଣ ?

ବନ୍ଧୁ—କାରଣ ଜାଣି ତମର ଲାଭ ?

ରାଜ—ସ୍ନେହୀର ମନୋଗତ ଭାବ ବୁଝିପାରିଲେ ଅସ୍ଥିର ହୃଦୟ ସ୍ଥିର ହେବ—ଏତିକିମାତ୍ର ଲାଭ ।

ବନ୍ଧୁ—ସେହୀ ଯଦି ତାର ମନୋଗତ ଭାବ ପ୍ରକାଶ ନ କରେ ?

ରାଜ—ଅସମ୍ଭବ । ସ୍ନେହୀ ଶବ୍ଦର ଅର୍ଥ ତାହାହେଲେ ଭିନ୍ନ ପ୍ରକାର ହୋଇଯିବ । ସ୍ନେହୀ ପାଖରେ······

ବନ୍ଧୁ—ଦରକାର ନାହିଁ ସେ ଭୂମିକାରେ । ଶେଷ କଥା କୁହ । ମୁଁ କାହିଁକି ତମର ସେ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରୁଛି, ତାର କାରଣ ଜାଣିବାକୁ ତମେ ଏକାନ୍ତ ଇଚ୍ଛୁକ, ଏଇ କଥାଟା ପ୍ରତିପନ୍ନ କରିବାକୁ ଯାଉଛ ତ ?

ରାଜ—ହିଁ ।

ବିଧୁ ଟିକିଏ ନୀରବ ରହି କହିଲା, "ହିଜ, ଶୁଣ ତେବେ । ମୁଁ ବିବାହ କରିବ ନାହିଁ ଆଦୌ ।"

ରାଜ—କାହିଁକି ?

ବିଧୁ—ତମର ଏକା କର୍ତ୍ତବ୍ୟ ଜ୍ଞାନ ଅଛି, ଆଉ ତାହାର ନାହିଁ ? ତମେ ନିରାଶ୍ରୟା ଅବଳାକୁ ସ୍ଥାନ ଦେଇ ତମର କର୍ତ୍ତବ୍ୟ ପାଳନ କଲ । ମୁଁ ଅର୍ପିତ ହୃଦୟ ଫେରାଇ ଆଣି କିପରି ମୋ କର୍ତ୍ତବ୍ୟରେ ଅବହେଳା କରିବି ?

ଏହି କଥା କେତେ ପଦ ବିଧୁ ବଡ଼ କରୁଣ, ବଡ଼ କାତର ସ୍ୱରରେ କହିଲା । ତାର ସେ କରୁଣ ସ୍ୱର ଶୁଣି ରାଜକିଶୋରଙ୍କର ଅନ୍ତର କରୁଣାରେ ଗଳିଗଲା । ଲୋତକରେ ଚକ୍ଷୁ ତାଙ୍କର ଛଳ ଛଳ ହୋଇ ଆସିଲା । ସେ କାନ୍ଦି କାନ୍ଦି କହିଲେ, "ବିଧୁ ଦେବୀ ତମେ । ମୁଁ ନାରକୀ, ପାଷଣ୍ଡ—ତମର ନିତାନ୍ତ ଅଯୋଗ୍ୟ । ଦରିଦ୍ର କପାଳରେ ଐଶ୍ୱର୍ଯ୍ୟ ଭୋଗ କାହିଁ ? କର୍ମ ମନ୍ଦ ନ ହେଲେ ହସ୍ତରେ ଅମୃତ ଧରି କିଏ ପାନ କରିବାକୁ ବଞ୍ଚିତ ହୁଏ ? କିନ୍ତୁ ବିଧୁ, ଭଉଣୀ ମୋର, ସେପରି ପ୍ରତିଜ୍ଞା କର ନାହିଁ, ମୋତେ ସ୍ନେହ କର—ଅନ୍ତରର ସହିତ ସ୍ନେହ କର । ପ୍ରେମ କର—ଅନ୍ତରର ସହିତ ପ୍ରେମ କର; କିନ୍ତୁ ସ୍ନେହ ବୋଲ ବା ପ୍ରେମ ବୋଲ, ପରମ ପବିତ୍ର—ସ୍ୱର୍ଗୀୟ ସେ । ତାକୁ କ୍ଷୁଦ୍ର ବାସନାର ବେଷ୍ଟନୀ ମଧ୍ୟରେ ଆବଦ୍ଧ ରଖି କଳୁଷିତ ହେବାକୁ ଦିଅ ନାହିଁ ।"

ବିଧୁ—ବେଶ୍, ମୁଁ ଅସ୍ୱୀକାର କରୁ ନାହିଁ ସେ କଥା । କିନ୍ତୁ ତମେ ପୁଣି ସେ କଳୁଷିତ ପ୍ରସ୍ତାବ କରୁଚ କାହିଁକି ? ମୋତେ ବାସନା-ନିଗଡରେ ଆବଦ୍ଧ ରଖିବାକୁ ତମର ଏତେ ଇଚ୍ଛା କାହିଁକି ?

ରାଜ—ବନ୍ଧୁ, ଯୁକ୍ତି କରନା, ବୁଝ ମୁଁ ଯାହା କହୁଛି । ସଂସାର— ସଂସାରର ଅର୍ଥ କଣ ? ନାରୀ ପୁରୁଷର ମିଳନହିଁ ସଂସାର । ନାରୀ ପୁରୁଷର ମିଳନ ନ ହେଲେ ମାନବ ସୃଷ୍ଟି ଅସମ୍ଭବ । ଭଗବାନ ସୃଷ୍ଟିକର୍ତ୍ତା, ତାଙ୍କର ଇଚ୍ଛା ସଂସାରକୁ ବଞ୍ଚାଇ ରଖିବା । କିନ୍ତୁ ତମେ ଯେଉଁ ସଙ୍କଳ୍ପ କରୁଛ, ତାହା ତାଙ୍କର ଇଚ୍ଛାବିରୁଦ୍ଧ କାର୍ଯ୍ୟ ହେଉଛି ।

ବନ୍ଧୁ—ଯୁକ୍ତି କରିବାକୁ ନାହିଁ କରୁଛ ତମେ, ସେଥିପାଇଁ ଆଜ କିଛି କହିପାରୁ ନାହିଁ । ତେବେ ଏତିକି ଜାଣ, ତମର ସେ ପ୍ରସ୍ତାବ ମୁଁ କୌଣସିମତେ ଗ୍ରହଣ କରିପାରିବି ନାହିଁ ।

ରାଜ—ବନ୍ଧୁ ! ତମେ ପରା ମୋତେ ସ୍ନେହ କର—ଭଲ ପାଅ ? ମୋର ଏହି ସାମାନ୍ୟ ଅନୁରୋଧ ରକ୍ଷା କରିବ ନାହିଁ ?

ବନ୍ଧୁ—ନା, ମୋତେ ଆଉ ବଳାଅ ନାହିଁ । ମୋର ପ୍ରତିଜ୍ଞା— ଶିର ଜୀବନ ମୁଁ ଏହିପରି କଟାଇଦେବି ।

ବନ୍ଧୁ ଉଠି ଚାଲିଯିବାକୁ ଉଦ୍ୟତ ହେଲା । ରାଜକିଶୋର ବି ଉଠି ପଡିଲେ । କହିଲେ, "ବନ୍ଧୁ, ଅପେକ୍ଷା କର ।"

ବନ୍ଧୁ କହିଲା "କଣ ?"

ରାଜ—ରଖିବ ନାହିଁ ଅନୁରୋଧ ମୋର ?

ବନ୍ଧୁ—ନା ।

ରାଜ—ଏ ପ୍ରତିଜ୍ଞା ତମର ଅଟଳ ?

ବନ୍ଧୁ—ନିଶ୍ଚୟ ।

ରାଜ—ମୋ ଲାଗି ତମର ସିନା ଏ ପ୍ରତିଜ୍ଞା । ମୋ ଲାଗି ତମର ସିନା ନାରୀ ଜନ୍ମ ବୃଥା ହେଉଛି—ଜୀବନ ବ୍ୟର୍ଥ ହେଉଛି । ମୁଁ ସବୁ ଅଶାନ୍ତିର ମୂଳ । ବନ୍ଦୁ, ମୁଁ ଶପଥ କରି କହୁଛି, ତମକୁ ଭଲ ପାଏ—ସ୍ନେହ କରେ—ପ୍ରେମ କରେ । ମୋର ସ୍ନେହ କୃତ୍ରିମ ନୁହେ, ପ୍ରେମ ଅଳୀକ ନୁହେ, ଭଲ ପାଇବା କ୍ଷଣିକ ନୁହେ । ଭାବି ଦେଖିଲ ବନ୍ଦୁ, ଭାଇ ଭଉଣୀ ପ୍ରେମ କେଡେ ପବିତ୍ର—ସ୍ନେହ କେଡେ ପ୍ରାଣମୟ—ଭଲ ପାଇବା କିପରି ସରସ ! ସୁନା ଭଉଣୀଟି ମୋର, ସେ ନିଷ୍ଠୁର ପ୍ରତିଜ୍ଞାରୁ ବର୍ଜିତ ହୁଅ । କନିଷ୍ଠା ଭଗିନୀର ଜୀବନ ଦୁଃଖମୟ ହେବ, ଏହା କଣ ଜ୍ୟେଷ୍ଠ ଭ୍ରାତା ନୀରବରେ ସହ୍ୟ କରି-ପାରେ ? ମୋର ଏ ଜୀବନ ବିନିମୟରେ ତୁ ଯଦି ସୁଖୀ ହେଉ ଭଉଣି, ସେଥିପାଇଁ ମୁଁ କୁଣ୍ଠିତ ନୁହେ । ସୁଖୀ ହେବୁ କି ?

ବନ୍ଦୁ କିଛି କହିପାରିଲା ନାହିଁ । ତାର ଅନ୍ତରରୁ ଅବ୍ୟକ୍ତ ବେଦନାର ଯେଉଁ ଭୀମ ଆବର୍ତ୍ତ ଜଡ୍ଡ଼ିତ ହେଉଥିଲା, ସେଥିରେ ତାର ବାକ୍‌ସ୍ଫୁର୍ତ୍ତି ହେଲା ନାହିଁ । ରାଜକିଶୋର ପକେଟରୁ ଏକ ଦୀର୍ଘ ଛୁରିକା ବାହାର କରି ନିଜର ବକ୍ଷ ଲକ୍ଷ୍ୟ କରି ଧରିଲେ । କହିଲେ, “ବନ୍ଦୁ, ଅନ୍ତିମ ଅନୁରୋଧ ମୋର, ତୋର ଜୀବନକୁ ହା ହୁତାଶ-ମୟ କରିବୁ ନାହିଁ । ଭାଇର ବକ୍ଷ ଶୋଣିତରେ ଭଉଣୀ ଅନ୍ତରର ସମସ୍ତ ଦୁଃଖ, ଦୈନ୍ୟ ଧୋଇ ହୋଇଯାଉ ।”

“ଅନ୍ତିମ ଅନୁରୋଧ !” ବନ୍ଦୁ ଚମକି ଉଠିଲା । ରାଜକିଶୋରଙ୍କ ମୁହଁକୁ ଗ୍ରହିଁଲା । ସେହି ଦୀର୍ଘ ଛୁରିକା ଉପରେ ତାର ଆଗ ଆଖି ପଡ଼ିଲା । ଛୁରିକାର ତେଜରେ ଆଖି ଝାପସା ହୋଇଯାଉଛି । କ୍ଷଣକ ପାଇଁ ଚକ୍ଷୁ ତାର ବନ୍ଦ ହୋଇଗଲା । ରାଜକିଶୋର କହିଲେ, “ଗୋକୁଳ

ବାବୁଙ୍କ ତୁ ପଡ଼ପଦରେ ବରଣ କଲେ ମୋର ଆତ୍ମା ନିଶ୍ଚୟ ସୁଖୀ ହେବ । ବଦାୟ ଭଉଣୀ । ଏ ନରାଧମକୁ ଭୁଲିଯା ଅଜିଠାରୁ ।"

ରାଜକିଶୋର ନିଜର ବକ୍ଷ ଉପରେ ଛୁରିକା ଠିକ୍ ବସାଇ-ଦେବା ସମୟରେ ବନ୍ଧୁ କ୍ଷିପ୍ରହସ୍ତରେ ତାଙ୍କର ହସ୍ତକୁ ଧରିପକାଇଲା । ରାଜକିଶୋର କ୍ଷଣକ ପାଇଁ ସ୍ତମ୍ଭୀଭୂତ ଭାବରେ ଠିଆ ହୋଇଗଲେ । ପରେ କହିଲେ "ଛାଡ଼ିଦେ ବନ୍ଧୁ ! ମୁଁ ତୋତେ ଭଉଣୀ ଭାବରେ ସ୍ନେହକରି ଯେଉଁ ପାପ ଅର୍ଜନ କରିଛି, ତାର ପ୍ରାୟଶ୍ଚିତ୍ତ କରେ । ଜଗତ୍ ଦେଖୁ ଭାଇ ଭଉଣୀ ପବିତ୍ର ପ୍ରେମର କି ଭୀଷଣ ପରିଣାମ ।"

ବନ୍ଧୁ ଭୟରେ ବିହ୍ୱଳ ହୋଇ ଶୋକାର୍ଦ୍ର କଣ୍ଠରେ କହିଲା, "କ୍ଷମା କର ମୋର ସବୁ ଦୋଷ । ଏହି ଛୁରିକାରେ ମୋର ବକ୍ଷ ବିଦ୍ଧ କର ଅଗ ।"

ରାଜକିଶୋର—ପାଗଳିଣୀ ତୁ ବନ୍ଧୁ ! ନାରୀହତ୍ୟା ମହାପାପ !

ବନ୍ଧୁ—ନରହତ୍ୟା ତ କମ୍ ପାପ ନୁହେ ।

ରାଜ—ତୁ ତ ନରହତ୍ୟା କରୁ ନାହୁଁ !

ବନ୍ଧୁ—ମୁଁ କପର କରୁ ନାହିଁ ? ମୋ ଯୋଗୁ ପିନା……

ରାଜ—ବେଶ୍, ତାହେଲେ କହ ବର୍ତ୍ତମାନ ତୁ ନିଜର ଭ୍ରମ ବୁଝିପାରିଲୁ ?

ବନ୍ଧୁ ନିରୁତ୍ତର ।

ରାଜ—ନୀରବ ହେଲୁ କାହିଁକି ? ସ୍ୱାର୍ଥତ୍ୟାଗ କରିବାକୁ କଷ୍ଟ ହେଉଛି ?

ବନ୍ଧୁ କମ୍ପିତ ଗଳାରେ କହିଲା, "ତମର ଏତେ ବଡ଼ ମୂଲ୍ୟବାନ୍ ଜୀବନ ତମେ ନଷ୍ଟ କରିବାକୁ ପ୍ରସ୍ତୁତ, ମୁଁ ତ ତମର ପର

ମନୁଷ୍ୟ ଜଣେ—ମୋର ଜଣ ମନୁଷ୍ୟର ହୃଦୟ ନୁହେ ? ଗୋଟାଏ ଅମୂଲ୍ୟ ଜୀବନ ବିନାମୂଲ୍ୟରେ କଷ୍ଟ ସ୍ୱୀକାର କରିପାରିବ ନାହିଁ ?"

ରାଜକିଶୋର ଦୂରକୁ ଛୁରୀଟା ଫିଙ୍ଗିଦେଇ କହିଲେ, "ବିଦୁ, ଭଉଣୀ ମୋର, ସତ କହ ଏ ଜଣ ତୋର ଅନ୍ତରର କଥା ?"

ବିଦୁ—ଅନ୍ତର୍ଯ୍ୟାମୀଙ୍କୁ ଗୋଚର ସେ କଥା । ମୁଁ......

ରାଜ—ଭଉଣୀ ମୋର, ଡ଼ାକିଲୁ ଥରେ ରାଜୁ ଭାଇ ବୋଲି । ହୃଦୟ ପୂରିଉଠୁ—ଅପୂର୍ଣ୍ଣ ପ୍ରେମ ପୂର୍ଣ୍ଣ ହେଉ ।

ବିଦୁ ଛଳଛଳ ନେତ୍ରଦ୍ୱୟ ଟେକି ରାଜକିଶୋରଙ୍କୁ ଚାହିଁଲା । ରାଜକିଶୋର ଉତ୍ଫୁଲ୍ଲ ପବିତ୍ର ଚାହାଣୀରେ ବିଦୁର ବିଧୁବଦନକୁ ଚାହିଁ ରହିଲେ କେତେ କ୍ଷଣ । ପରେ କହିଲେ, "ବିଦୁ, ଥରେ ଡ଼ାକ ରାଜୁଭାଇ ବୋଲି ।" ବିଦୁ ପଣନ୍ତରେ ଆଖି ପୋଛି ନେଇ ଡ଼ାକିଲା "ରାଜୁଭାଇ ।" ଗୋକୁଳ ବାବୁ ସେହି ସମୟରେ ଗୃହ ମଧ୍ୟକୁ ପଶି ଆସିଲେ । ବିଦୁ ସଙ୍କୁଚିତ ହୋଇ ନତ ମସ୍ତକରେ ଠିଆ ହେଲା । ରାଜକିଶୋର ତାର ହାତଟି ଟାଣିନେଇ ଗୋକୁଳ ବାବୁଙ୍କ ହାତ ଉପରେ ଥୋଇଦେଲେ । ଗୋକୁଳ ବାବୁଙ୍କୁ ଲକ୍ଷ୍ୟ କରି କହିଲେ, "ମୋର ଏ ଭଉଣୀଟିକୁ ଆଜିଠାରୁ ଆପଣଙ୍କ ହସ୍ତରେ ଅର୍ପଣ କଲି । ଆଶା କରେ, ଦୀନର ଏ ଉପହାର ଗ୍ରହଣ କରି ଉପକୃତ କରାଇବେ ।" ବିଦୁ ଅଶ୍ରୁସ୍ନାତା ଲତିକା ପରି ତଳି ପଡ଼ିଲା ଗୋଟାଏ ପାଖକୁ । ଗୋକୁଳ ବାବୁ ସଙ୍ଗେ ସଙ୍ଗେ ଟେକି ନେଇ ବକ୍ଷକୁ ଆଉଜାଇ ପକାଇଲେ ।

ଗୋକୁଳ ବାବୁଙ୍କୁ ବାଛିବାର କଣ ଅଛି ? ସେ ଶିକ୍ଷିତ, ସୁନ୍ଦର, ଯୁବକ ଏବଂ ଧନୀ—ଜାତିରେ ମଧ୍ୟ ସମାନ । ବିପିନ ବାବୁ

ଏବଂ ବୈକୁଣ୍ଠ ବାବୁ ଉଭୟେ ରାଜକିଶୋରଙ୍କ ପ୍ରସ୍ତାବରେ ଆନନ୍ଦିତ ହୋଇ ଉଠିଲେ । ଗୋକୁଳ ବାବୁଙ୍କ ସଙ୍ଗରେ ଶଦୁର ବିବାହ ପ୍ରସ୍ତାବ ସ୍ଥିର ହୋଇଗଲା ।

ଉକ୍ତ ଘଟଣାର ଦୁଇ ଦିନ ପରେ ରାଜକିଶୋର ଖବର ପାଇଲେ, ସରକାର ତାଙ୍କୁ ପାଞ୍ଚଶ ଟଙ୍କା ପୁରସ୍କାର ସହ ହେଡ଼ କନେଷ୍ଟବଲରୁ ସବ୍‌ଇନ୍ସପେକ୍ଟର ପଦକୁ ଉନ୍ନୀତ କରିଅଛନ୍ତି । ଜଗନ୍ନାଥ ମଙ୍ଗରାଜ କିନ୍ତୁ ତାଙ୍କୁ ଆଉ ଚାକିରି କରିବାକୁ ଅନୁମତି ଦେଲେ ନାହିଁ । କହିଲେ, "ମୋର ଯେତିକି ସମ୍ପତ୍ତି ଅଛି, ତୁ ବାବା, ଇଚ୍ଛା କଲେ ଦଶଟା ସବ୍‌ଇନ୍ସପେକ୍ଟର ରଖିପାରିବୁ । ଆମର ସେ ପୁଲିଶ ଚୌକୀଦାର ଚାକିରି ଲୋଡ଼ା ନାହିଁ ।"

ସଦାନନ୍ଦଙ୍କର ତ ପରଲୋକ ହୋଇ ଯାଇଛି । ଗୋକୁଳ ବାବୁଙ୍କ ବୋଉ ମଧ୍ୟ ତାଙ୍କୁ ଆଉ ଚାକିରି କରିବାକୁ ଅନୁମତି ଦେଲେ ନାହିଁ । ଦୁଇ ବନ୍ଧୁ ଗ୍ରାମରେ ରହି ପଲ୍ଲୀର ଉନ୍ନତି ସାଧନ କରିବା ଲାଗି ଦୃଢ଼ସଙ୍କଳ୍ପ ହେଲେ ।

**ସ-ମା-ପ୍ତ**



Printed by B. K. Kar B. A. at the Saraswata Press, Cuttack. 1934

